# ଖଣ୍ଡୁଧାର

( ପ୍ରକୃତ ଚତ୍ର ଖଣ୍ଡକାବ୍ୟ )

ଶ୍ରୀ ବୃନ୍ଦାବନ ମହାପାତ୍ର

# ଖଣ୍ଡାଧାର

( ପ୍ରକୃତି-ଚିତ୍ର ଖଣ୍ଡକାବ୍ୟ )

— ❀ —

ବାମଣ୍ଡା ରାଜଧାନୀ ଦେବଦୁର୍ଗ ନିବାସୀ

ଶର୍ମା ଶ୍ରୀ ହରିହର ମହାପାତ୍ର କବିରାଜ

ପ୍ରଣୀତ



ଶର୍ମା ଶ୍ରୀ ଇନ୍ଦୁଭୂଷଣ ମହାପାତ୍ରଙ୍କ ଦ୍ୱାରା

ପ୍ରକାଶିତ

ପ୍ରଥମ ମୁଦ୍ରଣ

୧୯୦୨

ମୂଲ୍ୟ ·୦ ୫

# ଭୂମିକା

ଖଣ୍ଡାଧାର ଗୋଟିଏ ଜଳପ୍ରପାତ । ଏହା ବଣାଇଁ ଜିଲ୍ଲାରେ, ବଣାଇଁ ଗଡ଼ରୁ ପ୍ରାୟ ମା ୧୩ ମାଇଲ୍ ପୂର୍ବ ଦିଗରେ 'ଖଣ୍ଡାପାଟ' ପର୍ବତରୁ ନିଃସୃତ ହେଉଅଛି । ଏହି ଖଣ୍ଡାପାଟ ପର୍ବତର ଉଚ୍ଚତା ସମୁଦ୍ର ପୃଷ୍ଠରୁ ୩୫୦୫ ଫୁଟ । ପ୍ରପାତର ୮୦୦ ଫୁଟ ଉଚ୍ଚତା ଓ ଜଳ ପ୍ରବାହର ବିପୁଳତା ଦେଖି ମନେହୁଏ, ଏହାଯୋଗେ ବିଦ୍ୟୁତ୍ ଶକ୍ତି ଉତ୍ପାଦନର ଆୟୋଜନ ହେଲେ ଗୋଟିଏ ଭଲ ଶିଳ୍ପ ଅନୁଷ୍ଠାନ ଚାଲି ପାରନ୍ତା । ନିମ୍ନଭୂମି ମଧ୍ୟ ଯଥେଷ୍ଟ ଅନୁକୂଳ ଥିବାର ଜଣାଯାଏ । ଏହାର ପ୍ରାକୃତିକ ଶୋଭା ବର୍ଣ୍ଣନ ଏ କ୍ଷୁଦ୍ର କାବ୍ୟର ବିଷୟ ବସ୍ତୁ । କାବ୍ୟର ମାଧୁର୍ଯ୍ୟ ବୃଦ୍ଧି ନିମନ୍ତେ ଅଞ୍ଚଳର ଐତିହାସିକ ସୂଚନା, ପ୍ରାସଙ୍ଗିକତା ରକ୍ଷା କରି ପାରିଛି କି ନା, ତାହା ସହୃଦୟ ପାଠକମାନଙ୍କର ବିବେଚନୀୟ । ୭୦୦।୮୦୦ ବର୍ଷ ପୂର୍ବେ ଦେଶର ଅବସ୍ଥା କଣ ଥିଲା, ରାଜାମାନେ ପରସ୍ପର ଅନ୍ତଦ୍ରୋହରେ ମାତି ଦେଶକୁ କିପରି ଶକ୍ତିହୀନ କରିଥିଲେ, ଯେଉଁ ସୁଯୋଗ ପାଇ ଶକ ହୂନ ମୋଗଲ ଆଦି ବିଦେଶୀୟମାନେ ଭାରତର ସର୍ବନାଶ କରିଗଲେ, ତହିଁର ସୂଚନା ଏହାର ଐତିହାସିକ ଅଂଶରେ କିଛି ଅଭିବ୍ୟକ୍ତ ହୋଇଛି । ବର୍ଣ୍ଣନାରେ ବୈଶିଷ୍ଟ୍ୟଯୁକ୍ତ ସ୍ଥାନମାନଙ୍କରେ ଯଥାସମ୍ଭବ ଫୁଟ୍ ନୋଟ ଦେଇଥିବାରୁ ଗ୍ରନ୍ଥଗତ ବିଷୟର ବିଶଦ ବିଶ୍ଳେଷଣ ଅବଶ୍ୟକ ବୋଧ ହେଉ ନାହିଁ ।

ଏ ପୁସ୍ତକଟିର ଲେଖା ୧୪।୧୫ ବର୍ଷ ପୂର୍ବରୁ ସମାପ୍ତ ହୋଇ, ନାନା କାରଣରୁ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ପାରି ନ ଥିଲା । ଏହାର ପ୍ରକାଶ ବିବରଣୀ ସ୍ମୃତି ସଙ୍କେତରେ ସୂଚିତ ହୋଇଅଛି ।

ବଣାଇର ସ୍ୱର୍ଗତ ରାଜା ଧରଣୀଧର ଇନ୍ଦ୍ରଦେଓ ଦେବ ମୋତେ ଡକାଇ ନେଇ "ଖଣ୍ଡାଧାର" ପ୍ରପାତ ପରି-ଦର୍ଶନର ସମସ୍ତ ସୁବିଧା କରିଦେଇଥିଲେ । ସୀମାବଦ୍ଧ ହେଲେହେଁ ତାଙ୍କର ଅନୁକମ୍ପାରେ ଏହା ପ୍ରକାଶିତ ହୋଇ ପାରୁଅଛି । ତାଙ୍କର ସ୍ୱର୍ଗୀୟ ଆତ୍ମା ପ୍ରତି କେବଳ ଶ୍ରଦ୍ଧା-କୃତଜ୍ଞତା ନିବେଦନ ଛଡ଼ା, ତାଙ୍କର ପ୍ରତିଶ୍ରୁତ ଉପହାର ବିନିମୟରେ ତାଙ୍କ ହାତରେ ପୁସ୍ତକ ଖଣ୍ଡିଏ ସମର୍ପଣ କରିବାର ଉପାୟ ନାହିଁ । ତାଙ୍କର ବଦାନ୍ୟମାନତାରେ ଏହା ପ୍ରକାଶିତ ହୋଇ-ପାରିଥିଲେ ପୁସ୍ତକଟିର ସୌଷ୍ଠବ ଅନ୍ୟ ପ୍ରକାର ହୋଇଥାନ୍ତା ।

ଦେବଗଡ଼-ବାମଣ୍ଡା
ସମ୍ବଲପୁର } ପ୍ରଣେତା

# ସ୍ମୃତି-ସଂକେତ

## ଶିକ୍ଷାବ୍ରତ ଶ୍ରୀଯୁକ୍ତ ଧରଣୀଧର ଦେହୁରୀ B.A.D.Ed.

ମହୋଦୟ

କରକମଳେଷୁ ।

ଯେଉଁ ଦିନ ମୋର ପ୍ରିୟତମ ସୁହୃଦ୍ ସାହିତ୍ୟ ରସିକ ଶ୍ରୀମାନ ବୃନ୍ଦାବନନାଥ ଶର୍ମା, ମୋର ଏହି କଳ୍ପନା-ସଙ୍ଗିନୀ 'ବନମାଳା'ର ନୈଃସର୍ଗ ମାଧୁର୍ଯ୍ୟରେ ମୁଗ୍ଧ ହୋଇ ତା'ର ହାତ ଧରିନେଇ ଆପଣଙ୍କ ସଙ୍ଗେ ଭେଟ କରାଇଦେଲେ, ଆପଣଙ୍କ ସ୍ୱଭାବ ମଧୁର ଦର ହାସରେ ଆପଣଙ୍କର ଏ ପ୍ରତିବେଶିନୀ ଆହ୍ଲାଦିତା ହୋଇ, ଆପଣଙ୍କର ନିର୍ଦ୍ଦେଶରେ ହିଁ ଅଶେଷ ସହାନୁଭୂତିସମ୍ପନ୍ନ ସଦ୍‌ସାହେବ ଶ୍ରୀମାନ୍ ହରପ୍ରସାଦ ଦେବଙ୍କୁ ଓଳଗି ହେଲା, ସେ ଦିନ ତା'ର ଅଜାଣତରେ ବନବାସିନୀ-ସୁଲଭ 'ଲାଜ' କୁଣ୍ଠିତରେ ହେଲେ ଲଭ ଯିବାକୁ ତିନିଜଣଙ୍କର ଅନ୍ତରର ସ୍ନେହ, ଆଶ୍ୱାସନା, ଯତ୍ନରେ ଓ ନିର୍ଦ୍ଦେଶ ମଟେ ଭେଟୋଟି ଶିଶିର ସ୍ନାତ ବନଫୁଲ ନେଇ ଉତ୍କଳ-ଭାରତୀ ପୂଜା ମଣ୍ଡପକୁ ଯାଉଛି । ସେଠାରେ ଅଳ୍ପ ଗଳି ସେ କୌଣସି ଅନ୍ଧାରିଆ କୋଣରେ ଠିଆ ହେଲେ ମଧ୍ୟ ସେ ଶିଶିର ସ୍ନାତ ପୁଷ୍ପଗୁଚ୍ଛରେ ତିନି ଜଣଙ୍କର ଶ୍ରଦ୍ଧା-ସ୍ମୃତି-ବିମ୍ବ ଚିର ବିମ୍ବିତ ରହିବ । ସେ ଶିଶିର ବିନ୍ଦୁ ଶୁଖିବ ନାହିଁ, ଏ ସ୍ମୃତି-ବିମ୍ବ ଲିଭିବ ନାହିଁ ।

ଗ୍ରନ୍ଥ ପ୍ରଣେତା

---

ମୁଁ କାଟଣ୍ଡାର ଲବ୍ଧପ୍ରତିଷ୍ଠ କବି ଡକ୍ଟର ଶ୍ରୀ ହରିହର ମହାପାତ୍ରଙ୍କ ରଚିତ 'ଖଣ୍ଡାଧାର' ଖଣ୍ଡକାବ୍ୟର ପାଣ୍ଡୁଲିପି ଆମୂଳଚୂଳ ପଢ଼ିଅଛି। କବିଙ୍କର ଭାଷା ପରିମାର୍ଜିତ ସୁଲଳିତ ଓ ପ୍ରକୃତିର ଶୋଭାବର୍ଣ୍ଣନା ମନୁଷ୍ୟ ହୃଦୟ ସ୍ପର୍ଶୀ ହୋଇଅଛି।

ଖଣ୍ଡାଧାର ପ୍ରପାତ ଓଡ଼ିଶାର କାହିଁକି ଭାରତ ବର୍ଷରେ ଏକ ବିରଳ ପ୍ରାକୃତିକ ଶୋଭା ସମ୍ପନ୍ନ ବିଶାଳ ଦୃଶ୍ୟ ହେଲେହେଁ କାମଣ୍ଡାର ପ୍ରଧାନପାଠ ସଦୃଶ୍ୟ ସର୍ବଜନ ସୁବିଦିତ ନୁହେ। ଏହାର କାରଣ ଏହି ଯେ, ଖଣ୍ଡାଧାର ଜଳପ୍ରପାତ ଭୀଷଣ ଅରଣ୍ୟ ମଧ୍ୟରେ ଅବସ୍ଥିତ ଓ ଅତ୍ୟଳ୍ପ ବର୍ଷ ପୂର୍ବେ ପ୍ରପାତ ନିକଟକୁ ଯିବାପାଇଁ ସୁଗମ ପଥ ନିର୍ମିତ ହୋଇ ନ ଥିଲା। ତଥାପି ଉକ୍ତ ପ୍ରପାତର ଆକାର ଏତେ ସୁବିଶାଳ ଯେ, ଏହା ପ୍ରାୟ ୨୦-୨୫ ମାଇଲ ଦୂରରୁ ସ୍ପଷ୍ଟ ଖଣ୍ଡାଧାର ସଦୃଶ ନବାଗତ ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରିଥାଏ। ପ୍ରପାତ ନିକଟକୁ ଗଲେ, ଗଙ୍ଗାଙ୍କର ସ୍ୱର୍ଗରୁ ଅବତରଣ ଶୋଭା ଏହିଠାରେ ଉପଲବ୍ଧି କରିବାର ସୁଯୋଗ ମିଳିଥାଏ। ଖଣ୍ଡାଧାର ପ୍ରପାତ ବଣାଇଗଡ଼ର ପୂର୍ବରେ ୧୩ ମାଇଲ ଦୂରରେ ଅବସ୍ଥିତ। ପ୍ରପାତଟି ଗିରିନଦୀ ଆକାରରେ ବଣାଇ ଓ କେନ୍ଦୁଝରର ସୀମାନ୍ତ ସୁରକ୍ଷିତ 'ଉନ୍ଦା' ନାମକ ଉପତ୍ୟକାରୁ ପ୍ରବାହିତ ହୋଇ କୁହାଭୁଇଁ ନିକଟସ୍ଥ ନଡ଼ାପାଣି ଗ୍ରାମରେ ୮୦୦ଫୁଟ ଉଚ୍ଚରୁ ଶୈଳଗାତ୍ରରେ ନିପତିତ ହୋଇ ପ୍ରପାତ

ସୃଷ୍ଟି କରୁଅଛନ୍ତି । ଭୂୟାଁଙ୍କ ବହୁଳ ଜନ୍ମ ଅଞ୍ଚଳକୁ 'ପାଉଡ଼ି' କୁହାଯାଏ । ଭୂୟାଁ ବା ପାଉଡ଼ିଆଙ୍କ ଜୀବନ ଯାପନପ୍ରଣାଳୀ ଅତି ସରଳ । ଏମାନେ ବଣାଇ, କେନ୍ଦୁଝର ଓ ପାଲଲହଡ଼ା ଅଞ୍ଚଳର ପ୍ରକୃତ ଅଧିବାସୀ । ବିଂଶ ଶତାବ୍ଦୀରେ ମଧ୍ୟ ଏମାନେ ସଭ୍ୟତାର ଅତି ନିମ୍ନସ୍ତରରେ ପଡ଼ିଅଛନ୍ତି ।

ମହାପାତ୍ରଙ୍କ ରଚିତ ଖଣ୍ଡ'ଧାର କାବ୍ୟରେ ପ୍ରକୃତିର ବଠବଘୋସ୍ତ, ଅଗଣିତ ପଶୁପକ୍ଷୀ, ଭୂୟାଁଜାତିର ପ୍ରଧାନ ଖାଦ୍ୟ, ବଣଜ ଫଳମୂଳ, ସେମାନଙ୍କର କମାଣ ବୃତ୍ତି, ସରଳ ଜୀବନଯାପନ ପ୍ରଣାଳୀ, ଗମ୍ଭୀର ଆତିଥେୟ ଓ ପ୍ରଭୁଭକ୍ତି ସୁନ୍ଦରଭାବେ ବର୍ଣ୍ଣିତ ହୋଇଅଛି । ଭୂୟାଁଙ୍କ ନିକଟସ୍ଥ ଭୂଗର୍ଭରେ ବିଶାଳ ଲୌହଖଣିର ସନ୍ଧାନ ଏବେ ମିଳିଅଛି । ଆଶାକରୁ ନବୀନ ଓଡ଼ିଶାର ଶିଳ୍ପପତିମାନେ ଉକ୍ତ ଖଣିଜ ସମ୍ପଦର ସଦ୍‌ବ୍ୟବହାର କରିବା ଉଦ୍ଦେଶ୍ୟରେ ଉକ୍ତ ପ୍ରପାତର ବିଶାଳ ଜଳରାଶିକୁ କାର୍ଯ୍ୟରେ ଲଗାଇବେ । ଇତି ।

ଶ୍ରୀଯୁକ୍ତ ଧରଣୀ ଧର ଦେହୁରୀ
ହେଡ଼ମାଷ୍ଟର ରାଜକୁମାର ହାଇ ଇଂରେଜୀ ସ୍କୁଲ
ପୋ: ବାମଣ୍ଡା

---

# ଖଣ୍ଡାଧାର

( ପ୍ରକୃତି ଚିତ୍ର )

## ପ୍ରଥମ ସର୍ଗ ।

* ଜୟ 'ଖଣ୍ଡାପାଠ' ଶୈଳ-ବିଳାସିନି !
ଜୟ ଶୋଭାଦେବି ! ଶୟ୍ୟନ ତେଜ,
ଆସିଅଛି ମୁଁ ସେ ଦୂର ପଥ ବାହି
ତୋର ଦରଶନ ମାନସେ ହେଜି । ୧ ।
ସ୍ୱଭାବ ସୁନ୍ଦର ତୋ ବିମଳ ଛବି
ଫୁଟିଉଠୁ ମୋର ମାନସ-ତଟେ,
ଦେଖାଅ ଯତନେ ସେ ଶୋଭା-ରତନ
ସାଜି ରଖିଅଛୁଁ ହୃଦୟ-ପଟେ । ୨ ।

---

* ବଣାଇଁର ସୁନାମପ୍ରସିଦ୍ଧ ଖଣ୍ଡାଧାର ପ୍ରପାତ ଖଣ୍ଡାପାଠ ପର୍ବତ ଶିଖରରୁ ନିସୃତ ।

ସାଜ ରଖିଅଛୁ    ଗିରିବନେ କେତେ
ନିଭୃତ ନିକୁଞ୍ଜ    ମଞ୍ଜୁ ନିଳୟ
କାହିଁ କେତେ ରୂପେ    ଶିଳସୁ ଗୋପନେ
କର ଏ ଉତ୍କଳ    ସୁଷମାମୟ । ୩ ।
ଚିଲିକା ବକ୍ଷରେଁ    ସୁନୀଳ ଅକ୍ଷରେ
ତରଙ୍ଗେ ତରଙ୍ଗେ    ଅମର ଗୀତ,
ଗାଇ ଶୁଣାଇଲୁ    (୧)ରାୟ କବିଙ୍କର
ଶ୍ରପଞ୍ଚୀ ପଞ୍ଚମେ    ସଞ୍ଚାର ପ୍ରୀତ । ୪ ।
ପଛ ପୁରୋହିତ-    ରୂପେ ଦେବ । ସେ ତ
କେତେ ଚିରନବୀ    ନିକୁଞ୍ଜେ ବସି,
ଆରାଧିଲେ ତୋର    ରମଣୀୟ ରୂପ
ବଜାଇ ମଧୁରେ    ମୋହନ ବଂଶୀ । ୫ ।
(୨) ବୈତରଣୀ ତୀରେ    ଶାଳନ୍ଦୀ ପୁଳିନେ
ନୀଳାଚଳ-ତଟେ    ସିନ୍ଧୁ ତରଙ୍ଗେ,
କଇଁସାଗ୍ରି ଲତା-    ଶ୍ୟାମ ବାଳ-ସ୍ତୂପେ
ଖଞ୍ଜିଲେ କୁସୁମ    ତୋ ଚାରୁ ଅଙ୍ଗେ । ୬ ।
(୩) ଉଜଳେ ଦ୍ୱିତୀୟ    ନାଏଗ୍ରା ପରାଏ

---

(୧) କବିବର ସ୍ୱର୍ଗ ୰ରାଧାନାଥ ରାୟ ବାହାଦୁର ଚିଲିକା-ବକ୍ଷରେ ଶୋଭାଦେବୀଙ୍କର ରମଣୀୟ ରୂପର ଆରାଧନା କରି "ଚିଲିକା" କାବ୍ୟ ଲେଖି ଅଛନ୍ତି ।

(୨) ଏହି ସ୍ଥାନମାନଙ୍କର ଶୋଭା କବିବରଙ୍କ ଗ୍ରନ୍ଥାବଳୀରେ ସମାଦୃତ ।

(୩) ଯୁ କବିବରଙ୍କ ଦୃଷ୍ଟିଗୋଚର ହୋଇଥିଲେ ସମାଦରରେ ଆଦୃତା ହୋଇ ଅପେକ୍ଷାକୃତ ଅଧିକ ପ୍ରଖ୍ୟାତି ଲାଭ କରିଥାନ୍ତା ।

ବିରାଟ ସୁନ୍ଦର ଏ ଛବିଗୋଷ୍ଠି,
ଲୁଚ୍ଛି ଗୋପନେ ଲଜ୍ଜାବତୀ ବାଳା
ପ୍ରାଏ ବିଳସନ୍ତୁ ବିଜନେ ଲେଟି । ୭ ।
ଏ ✽ ଧରଣୀଧର- ଚରଣେ ଲୋଟନ୍ତୁ
ଛିଣ୍ଡାଇ ସହସ୍ର ମୁକୁତା ମାଳା,
ମୋ ବିପଞ୍ଚୀ ତାନେ ଏ ଶିଳା ଶଯ୍ୟାରୁ
ଉଠ କନା ଥରେ ପ୍ରକୃତ ବାଳା । ୮ ।
ତୁଙ୍ଗ ଶୃଙ୍ଗ ପାରେ + ରକ୍ତାଗ୍ରାମ ତଟେ
ଅଧିତ୍ୟକା ଭୂମେ ସଧୀରେ ବନ୍ଧୁ,
ଶୁଣୁଥାଉ ଯେବେ ଝୁଙ୍ଗ ବାଦ୍ୟନାଦ
ଶିଳାସନେ ଠାବି ଠାବକେ ରହୁ । ୯ ।
ବେତସ ନିକୁଞ୍ଜେ ନିଭୃତେ ବିଳସି
ଭୂୟାଁ ପ୍ରମଦାଙ୍କ ସେ ହଲ୍ଲୀଷକ,
ଦେଖୁଥାଉ ପୁଣି ଶୁଣୁଥାଉ, ତାଙ୍କ
ସଙ୍ଗୀତ ଲହରୀ ସମୁଲ୍ଲାସକ । ୧୦ ।
ନିବିଡ଼ ନିଶୀଥେ ବନ-ଦେବୀଙ୍କର
ବୀଣାତାନ ସମ ଝିଲ୍ଲୀ ନିସ୍ୱନ,
ମୁଗ୍ଧ କରେ ମୋର କୁମାରୀ ହୃଦୟ
କହୁ ସେହୁ ବାଲ୍ୟ- ସ୍ମୃତି ବହନ । ୧୧ ।
ଲୁଣ୍ଠି ନାଗେଶ୍ୱର ଚମ୍ପକ-ମାଳତୀ
ବନଦେବୀ ଦେଲେ ତୋ ବକ୍ଷ ମଣ୍ଡି,

---

✽ ଭାବ୍ୟଗତ ଅର୍ଥ—ପର୍ବତ । ଅର୍ଥାନ୍ତର—ବଣାଇ ରଜା ‘ଧରଣୀଧର’ ।

+ ଖଣ୍ଡାପାଟ ପର୍ବତର ଅପର ପାର୍ଶ୍ୱରେ ‘ରକ୍ତା’ ଜନ୍ମୀର ତଳୁ, ତାଙ୍କଠାରୁ ଦକ୍ଷିଣ ଭୂୟାଁ ଗ୍ରାମମାନ ଅଛି ।

ଘୁହୁଁ ଘୁହୁଁ ନବ କଣୋଗ୍ର୍ୟ ମୁରଜ
ବତ୍ସଲ ହୃଦୟ ଜଡ଼ତା ଖଣ୍ଡି ।୧୨।
ଭୃଙ୍ଗ ଶୃଙ୍ଗ ଡେଇଁ ଓହ୍ଲାଇ ଆସିଲ
ଉନ୍ମତ୍ତ ଉଲ୍ଲାସେ ଭଗ୍ନ ସୋପାନେ,
ତରଳ ସରଳ ସଂଗୀତ ଲହରୀ
ଖୋଲିଲ ହରଷେ ଷଡ଼ଜ ତାନେ ।୧୩।
ହ୍ରମାଦ୍ର ବକ୍ଷରେ ସ୍ୱର ତରଙ୍ଗିଣୀ
ପ୍ରାଏ ସ୍ଫୁରିତର ତୋ ନୀର ଧାର,
ଅବା ଶୁଭ୍ର ରୂପା ଜରୀର 'ପାଛୁଡ଼ା'
ଅବା ଲକ୍ଷ ହୀର ମୁକୁତା ହାର ।୧୪।
ହୀରା ମୁକୁତାର ଅଛି କବା ମୂଲ୍ୟ
ହେବ ଏ ନିସର୍ଗ ସମ୍ପଦେ ସରି,
ପ୍ରୀତ ନୀରବିନ୍ଦୁ ଅନ୍ତରେ ତ ତାର
ଅଛି ସଂଜୀବନ ଅମୃତ ଭରି ।୧୫।
ଲୌହମୟ ଦୃଢ଼ ଶୈଳ ସୌଧ ତୋର
ବ୍ୟୋମ-ବକ୍ଷ ଚୁମ୍ବି ଦିଶେ ସୁନ୍ଦର,
ରକ୍ତ କୃଷ୍ଣ ଶିଳା ପିହିତ ପ୍ରାଚୀରେ
ଶିର କାନ୍ତ ତୋର ରୁଦ୍ର କନ୍ଦର ।୧୬।
ପଦତଳେ କେତେ କସ୍ତୂଥ ସମ
ସୁବିଶାଳ ଶିଳା ନିରୋଧି ପଥ,
କରୁଛନ୍ତି ଅଳି ତେଜ ନିର୍ଝରଣୀ
ଅଭିସାରିକାର ଏ ମନୋରଥ ।୧୭।
ପ୍ରେମେ ଉଚ୍ଛଳି ଉଲ୍ଲସିତ ହୃଦେ
ଭୃଙ୍ଗ ଶୃଙ୍ଗ ଶୈଳ ଅବରୋହଣେ,
ଆସିଅଛୁ ବନ୍ଧୁ ଦୟା ମୂର୍ତ୍ତିମତୀ
ପିପାସୁ ଜୀବର ଦୁଃଖ ହରଣେ ।୧୮।

କୁଟିଳ ଜଞ୍ଜାଳ          ମହତର ଲକ୍ଷ୍ୟ
ରୋଧି ନ ପାରେ ତ          କେବେ ଭୁବନେ,
ପଦାଘାତେ ତୁଚ୍ଛି          ଲକ୍ଷ ଅନ୍ତରାୟ
ଲାଗିଛୁ ନିରତେ          ଲକ୍ଷ୍ୟ ସାଧନେ । ୧୯ ।

ସିନ୍ଧୁ ଅଭିସାର          ନିର୍ଝରଣୀ ତୋର
ଉତ୍କଟେ ପଙ୍କିଳ          ନୁହେଁ ତ କେବେ,
ପ୍ରେମ ଦାମ୍ଭୀ ସହିଁ          ଅନ୍ୟୋନ୍ୟ ମିଳିତ
ବାଳସନ୍ତ ତହିଁ          ସଫଳ ଦେବେ । ୨୦ ।

ଲତାବୃତ ସ୍ତୂପ          କୁଟିର ଛବିଳ
ଦେଖାଇ ସ୍ୱ ବପୁ          * "ଛେଳିଆ ଠୁଙ୍ଗି",
ଦହିଣୁ ଦେଖଇ          ବିମୁଗ୍ଧ ଲୋଚନେ
ତୋ ଚଞ୍ଚଳ ଗତି          ପ୍ରେମ ଅତୁର । ୨୧ ।

ବନ-ଦେବତାର          ତୁଙ୍ଗ ସୌଧ ସମ
"ବୁଢ଼ା ପାଠ" ଟିର          ଗଢେ ଉତ୍ତରେ,
ବୃଦ୍ଧ ଋଷି ଶୈଳ          ବିଗ୍ରହେ ଅସୀନ
ପ୍ରାଏ ଶିଳାଖଣ୍ଡ          ଶୋଭେ ଶିଖରେ । ୨୨ ।

ଦିବାନିଶି ତୁ ତ          ଅଶ୍ରାନ୍ତ ଗମନେ
ଧାଉଁଛୁ ଧାଉଁଛୁ          ଅନନ୍ତ ପଥେ
ଦିବାନିଶି ସେ ତ          ଦେଖୁଛନ୍ତି ଦେଖୁଛନ୍ତି
ଶିଳାସନେ ବସି          ତୋ ମନୋରଥେ । ୨୩ ।

---

* ଶୀତ ଋତୁରେ ସୂର୍ଯ୍ୟୋଦୟ କାଳରେ ଏହି ପର୍ବତର ଦୃଶ୍ୟ ଦୂରରୁ ଲତାବୃତ ଗୋଟିଏ ବଡ଼ କୁଟିର ପରି ଦେଖାଯାଏ । ଏହାକୁ କେହି କେହି ଛେଳିଆ ଟୋକା ବା କେହି କେହି ଛେଳିଆ ଠୁଙ୍ଗି କହନ୍ତି ।

କେତେ ମୋଡଙ୍ଗର ଅଜାଡ଼ି ଦେଉଛନ୍ତି
ଶୁଣୁଛୁ କି + ବୁଢା ବସି ନୀରବେ
ନିବିଷ୍ଟ ମାନସେ ଶୁଣୁଛି ନୀରବେ
ଗାଉଛୁ ଯେ ଗୀତ ପ୍ରେମ ଗରବେ । ୨୪ ।

ନିର୍ଝରିଣି ! ସେ ତ ମୂକସାକ୍ଷୀ ତୋର
କେତେ ଶୀତ ଖରା ବରଷା ସହି,
ଦେଖୁଛି—କେମନ୍ତେ ନୀର ସୁଧା ଢାଳି
ପତ୍ର-ପୁଷ୍ପ-ଫଳେ ମଣ୍ଡୁଛୁ ମହୀ । ୨୫ ।

ଦେଖୁଛି—କେମନ୍ତେ ଶୈଳ-ତଟ-ଭୂମି
ଉଦ୍ଦାମେ ପ୍ରାବୃଟ— ପ୍ରବାହେ ଖୋଳି
ବିରଚିଲୁ ନିମ୍ନ ଉପବନ ଯେସ
ସାର ପୂର୍ଣ୍ଣ * "ପଙ୍କୁ" କଙ୍କାଳ ବୋଳି । ୨୬ ।

ଅଦ୍ଭୁତ ବରଷ ଦିବାନିଶି କ୍ରମେ
ଚିରତଟଭୂମି ଖୋଳି ଯତନେ,
ଲଭିଛୁ ସିନା ଏ ରମଣୀୟ ରୂପ
ମଣ୍ଡିଅଛୁ ହାର ମୋତି ରତନେ । ୨୭ ।

ଦକ୍ଷ ଶିଳ୍ପୀ ସମ କାଟି ଶୈଳବକ୍ଷ
ବିରଚିଲୁ ଉଚ୍ଚ ସୋପାନ ରାଜି,
ଦୀର୍ଘ ସାଧନାର ସିଦ୍ଧିବଳେ ସିନା
ଉନ୍ନତ ଉଲ୍ଲାସେ ଲୋଟୁଛୁ ଅଜି । ୨୮ ।

ହେମନ୍ତ ପ୍ରଭାତେ ବାହିଦେଇ ଯେବେ
ସମୀର ଲହରେ ଶୀକର ରାଶି,

---

+ ବୁଢ଼ାପାଠ ପର୍ବତ ଶିଖରରେ ଥିବା ଏକ ପଥର ଖଣ୍ଡ ବୁଢ଼ା ନାମରେ ଜନସାଧାରଣଙ୍କ ଦ୍ୱାରା ଅଭିହିତ ।

* ବୃଷ୍ଟି ଜଳରେ ବାହିତ ମୃତ୍ତିକାକୁ ପଙ୍କୁ କହନ୍ତି ।

କନକ କିରଣ ଝୁଣିଦଏ ଚେଭେଣେ
ବାଳଭାନୁ ଟଢାର ପୃଷ୍ଠେ ଉଦ୍ଭାସି । ୨୯ ।
ନୀଳ ପ୍ରାବରଣେ ଖଣ୍ଡାପାଟ ବସ୍ତ୍ର
ଘୋଡାଇ ପଲଙ୍କେ କି ଇନ୍ଦ୍ରଜାଲେ
ଦଣ୍ଡଥାଉ, ମହା ମତ୍ତ ମାତଙ୍ଗର
ମଦଜଳ ଝର ପ୍ରାଏ ସେ କାଳେ । ୩୦ ।
ଗଣ୍ଡ ମଧୁ ମୁଖେ ମଧୁପ ନିକର-
ପ୍ରାଏ କ୍ଷୁଦ୍ରତମ ଝାଙ୍ଗୀ ବାହୁଡ଼ି
ଗିରି ନୀଳଗଣ୍ଡ- କୁମ୍ଭପାର୍ଶ୍ୱେ ସୁଖେ
ନୀର ମଧୁପାନେ ବୁଲନ୍ତି ଉଡ଼ି । ୩୧ ।
ନ ଦଶଇ ନେତେ ଚିରଗାନ, ମାନ
ନୀଳକାନ୍ତ ଛବି ଦିଶେ ଗମ୍ଭୀର
ସୁମହିର ଦଏ ରୁଚ୍ଛୀକୃତ କର
ଅଙ୍ଗ-ଶରବଣ୍ଡ ଗଙ୍ଗ ଶରୀର । ୩୨ ।
ରୌପ୍ୟ ଅସିବଳି ସମ କରିବଳି
ବିସ୍ତାର ଦେଖା ପୃଷ୍ଠେ ରାଜନ୍ତି ରବି,
ପ୍ରକଟେ ସେକାଳେ ବୈନତେୟ-ପୃଷ୍ଠେ
ବିଷ୍ଣୁ କରନ୍ତି— ଶୋଭିତ ଛବି । ୩୩ ।
ବିଷ୍ଣୁ ବକ୍ଷେ ଦୀପ୍ତ କଉସ୍ତୁଭ ସମ
ବିମ୍ବିତ ଦେଖା ବକ୍ଷେ ନବ ତପନ
ସେ ବକ୍ଷର ଶୁଭ୍ର ଚନ୍ଦନ ପରିଏ
ବୁଝି ନିର୍ଝରଣୀ ଦଣ୍ଡୁ ଶୋଭନ । ୩୪ ।
ନବ ଉଷାଗମେ ଡ଼କୁଟେ କୁକ୍‌କୁଟ
କନକ ମୁକୁଟ ସଞ୍ଚାଳି ଧୀରେ
କୂଜନ୍ତି କପୋତ ଭାଷନ୍ତି ଶାରିକା
ଲତାକୁଞ୍ଜେ, ଉଚ୍ଚ ପାଦପ ଶିରେ । ୩୫ ।

ପ୍ରଭାତତାନ ତୋଳି    ରଙ୍ଗେ ଭୃଙ୍ଗରାଜ
ସଙ୍ଗୀତ ତରଙ୍ଗେ    ଅଭିବାଦନ
ଜଣାଏ ମଧୁରେ;    ବନଦେବୀଙ୍କର
ସତେ ସେ ନିସର୍ଗ    ବଂଶୀ ବାଦନ । ୩୬ ।
'କାଳ ବସନ୍ତ'ର    ସଙ୍ଗେ* 'କୁମ୍ଭାଟୁଆ'
କମ୍ପାଏ କାନନ    ଗମ୍ଭୀର ସ୍ୱରେ
ବଣୀକୁଳ ମିଳି    କରନ୍ତି ସମିତି
ପ୍ରଭାତ ମୟୂଖେ    ପାଦପ ପରେ । ୩୭ ।
ବିବିଧ ବିହଙ୍ଗେ    କୁଞ୍ଜେ କୁଞ୍ଜେ ଖେଳି
କରନ୍ତି ଅହ୍ଲାଦେ    ଉଷା ବନ୍ଦନ
ଗମ୍ଭୀର ଝଂରଝଂର    ସଙ୍ଗୀତେ ତୋ'ହର
ମିଶେ କି ମଧୁରେ    ସେ କଳସ୍ୱନ । ୩୮ ।
ପାର୍ଶ୍ୱେ ତୋର, ପୁଣି    ପାର୍ଶ୍ୱେ ଶୈଳ ଚୟେ
ବିରଚି † କମାଣ    ଭୂୟାଁ ନିକର,
ଉଦ୍ୟାନର ଶୋଭା    ଶୈଳ ପ୍ରକୋଷ୍ଠାର
ଯାପନ୍ତି ଆନନ୍ଦେ    ନିଶୀ ବାସର । ୩୯ ।
ଅମୃତ ଆକାରେ    ପକ୍ୱଧାନ ପୁଣି
‡ ରାମତିଲା ଯେବେ    ପୀତ ସୁମନେ
ଭିଡ଼ି ଗାବେ ସତେ    ପୀତାମ୍ବରୀ ଶାଢ଼ି
ପିନ୍ଧାଇ ଦଅନ୍ତି    ଅଙ୍ଗ ଯତନେ । ୪୦ ।
ସୁନାଝରୀ ସବୁ    ଦିଶେ କି ରୁଚିର
ଶିଖରେ ଝଲକି    ତପନ ବିଭା,

---

* ସୁନାମପ୍ରସିଦ୍ଧ ପକ୍ଷୀ ।

† ଅନାର୍ଯ୍ୟମାନଙ୍କର ପାର୍ବତ୍ୟ କୃଷିକ୍ଷେତ୍ରକୁ କମାଣ, ବିରଙ୍ଗା ଓ ରମା ବୋଲାଯାଏ ।

‡ ଏକପ୍ରକାର ତୈଳବୀଜ ଶସ୍ୟ ।

ରମ୍ୟତନୁ ତହିଁ        କେତେ ବିହଙ୍ଗମ
ବାଳସନ୍ତ ଦେଖି        ଅଗତ ଦବା । ୪୧ ।
ବନବାଳାକୁଳ        ଅନଳେ ସୁଦଗ୍ଧ
ଉପ୍ର "କନ୍ଦମୂଳ"        କର ଭକ୍ଷଣ,
ଚଉପାଖେ ବେଢ଼ି        * ଅନ୍ତର ଅଗ୍ନିକ
କରୁଥାନ୍ତି ହେଳେ        ଶୈତ୍ୟ ବାରଣ । ୪୨ ।
ଶିମ୍ବ ଭୃଙ୍ଗମଞ୍ଜି        † ଶିଅଳର ଫଳ
ପୋଡ଼ାଇ ଖାଆନ୍ତି        କେତେ ଆଦରେ,
ସରଳ ଜୀବନ        ସରଳ ବଚନ,
ନାହିଁ ମନ ଛନ୍ଦ        ଅପବାଦରେ । ୪୩ ।
ନିର୍ଝରିଣି ! ତୋର        ସଙ୍ଗଗୁଣ ଲଭି
ତୋ ପରି ସରଳ        ତାଙ୍କ ଜୀବନ,
ନ ଲୋଡ଼ନ୍ତି ସେ ତ        ନବ୍ୟ ଜଗତର
ସଭ୍ୟତାର ଛଳ-        ଛନ୍ଦ ବନ୍ଧନ । ୪୪ ।
ପ୍ରକାଶୁଁ ଅଧିକେ        ଗୋପନେ ଗୋପନେ
ସଞ୍ଚାରିତ ତୋର        କରୁଣା ଝର,
ଠାବେ ଠାବେ        ଟିରିଗାଧେ ଝରପଡ଼େ
ସ୍ୱଚ୍ଛ କୁଣ୍ଡେ        କାହୁଁ ସ୍ୱଚ୍ଛେ ସୁନ୍ଦର । ୪୫ ।
ଦକ୍ଷିଣେ ବିମଳ        'କରପାଣି' ଝର
‡ "କାନ୍ତ କୁମାରୀ"ଙ୍କ        ଚରଣ ଧୋଇ

* ଶୀତ ନିବାରଣ ନିମନ୍ତେ ପ୍ରଜ୍ୱଳିତ ଅଗ୍ନି ।
† ଏକ ପ୍ରକାର ବନ୍ୟଲତାର ଫଳ ।
‡ ଏଠାରେ ଭୁୟାଁ ଜାତିର ଦେବତା 'କାନ୍ତକୁଅଁରୀ' ଦେବୀଙ୍କର ପୀଠ । ଆଶ୍ୱିନ ମାସରେ ଏହାଙ୍କର ପୂଜା ଉତ୍ସବ ଅନୁଷ୍ଠିତ ହୁଏ ।

ତରୁଲତା ଅଙ୍ଗେ ଶାରଦ ସୁମନ
ଫୁଟାଇ ପୂଜଇ ସେ ପଦେ ଥୋଇ । ୪୬ ।
ଜଳରେ * "କୁରହାଣ୍ଡ" ଶୀକର ସମ୍ପଦେ
ସ୍ନିଗ୍ଧ କର ଲତା ପାଦପ ଚୟ
ବୃଥା ପାଠ ପଦ ଧୋଇ, ବ୍ରାହ୍ମୀ ଅଙ୍ଗେ
ଢାଳି ଦେଉଅଛି ପୀୟୂଷ ପୟ । ୪୭ ।
ସ୍ଥାନେ ସ୍ଥାନେ ଯେଉଁ ଝରକୁଣ୍ଡ ମାନ
ସଜାଇ ରଖିଛୁ ଜଳ ଯତନ
ତହୁଁ ତୃଷ୍ଣାଗତେ ନୀରଜର ଭୁଞ୍ଜି
କରଇ କ୍ରମାଣେ ଧୀରେ ଗମନ । ୪୮ ।
ଭଗ୍ନ ପରେ ଭଗ୍ନ ଲଙ୍ଘି ଦୃଢ଼ପଦେ
ତୁଙ୍ଗ ଶୃଙ୍ଗେ ହେଲେ ହୁଏ ପ୍ରବେଶ
ବସି ତରୁମୂଳେ ସ୍ଫଟିକରୁ ଦୂରେ
ଦେଖେ—କେତେ ଚିର- କାନନ ଦେଶ । ୪୯ ।
ଦେଖେ—କେତେ ଭଙ୍ଗେ ଖେଳାଇ ସ୍ୱଅଙ୍ଗ
ବହେ ସ୍ୱଚ୍ଛନୀର ବ୍ରାହ୍ମୀ ତଟିନୀ,
ଶିଳାସ୍ତୂପ ତାହୁଁ ଉତ୍ପ୍ଲବନୀ, କାହୁଁ
ସୈକତ ତଳରେ ରଙ୍ଗଗାମିନୀ । ୫୦ ।
ତୀର ତରୁ ଡେଙ୍କ ନୀରଖଣ୍ଡା ପରେ
ସେ ବ୍ରାହ୍ମୀ ପ୍ରବାହେ ବାସବ ମୁଖେ,
ଦୂର ବ୍ୟବଧାନୁଁ ଅଣିମା ଦେଖାଇ
ରଥାଙ୍ଗ ମିଥୁନ ଖେଳନ୍ତି ସୁଖେ । ୫୧ ।
ବ୍ୟୋମଚୁମ୍ବୀ ତଟ + 'ଫାସି' ପାଦପରୁ
ଖସି ପଡ଼େ ଶୁଭ୍ର ବକାଳୀ ମାଳା,

* ଏହା ଗୋଟିଏ ନର୍ଝର । + ବୃକ୍ଷ ବିଶେଷ ।

ହୀରହାର ତୁଲେ ମଲ୍ଲିକା ମାଳିକା
ପିନ୍ଧେ କି ସେ କାଳେ ନଗରୀ-ବାଳା । ୫୨ ।

ଲଳନ୍ତିକା ସମ ରବି ରଶ୍ମି ବିମ୍ବ
ସେ ଭ୍ରାନ୍ତି ଲହରେ ଉଠେ ଲହରି,
ପ୍ରତିକ୍ଷେପେ ପୁଣି ଉଠେ, ତହୁଁ ଦୀପ୍ତ
ଜ୍ୟୋତିଃ ପ୍ରସ୍ରବଣ ନବେ ସଞ୍ଚରି । ୫୩ ।

ଡ଼ାକି ପ୍ରେୟସୀକି ପାଶେ, ଭାଷେ ଭୂୟାଁ ।
“ଧୋବ ଦଣେ କିସ କହ ଅନାଇଁ”,
ପ୍ରେମମୁଗ୍ଧ-ବାଳା କହେ ମନ୍ଦେ ହସି
“ମୁଁ କିସ ଜାଣଇଁ ଦିଅ ଚିହ୍ନାଇ” । ୫୪ ।

କହେ ଯୁବା ଧୀରେ “ଶୁଣ୍ ଲୋ ନାଗରି !”
ରୁଷିଲା ସେ ବାଳା ଫୁଲାଇ ନାସା,
ଭାଷିଲା କୋପନେ “ସୁରୁ ଦିନେ ତୁ ଯେ
କହୁଥାଉ ସେଇ ‘ନାଗରୀ’ ଭାଷା” । ୫୫

“ନା ନା ଆଉ କେବେ ନା କହେଁ” ଭାଷିଲା
ସେ ଯୁବକ ହସି ମଧୁର ବାଣୀ,
ହସିଲା ମଧୁରେ, କଣ୍ଠ ଆଲିଙ୍ଗନେ
ମିଶିଲା ହୃଦେ ତା ହୃଦୟ-ରାଣୀ । ୫୬ ।

ଗିରିପରେ ଗିରି କେତେ ଟିରିମାଳା
ଅନ୍ତରାଳେ କେତେ ଗ୍ରାମ ନଗର,
ଲଙ୍ଘି, ସାଗର ମହୋର୍ମି ପରିଏ
ପ୍ରକାଶନ୍ତି କାନ୍ତି ନୀଳ ସୁନ୍ଦର । ୫୭ ।

ରଚି ରମ୍ୟଦୁର୍ଗ ନୀଳମଣିମୟ
ପରିଧି ପ୍ରାକାରେ କରି ବେଷ୍ଟନ,
ବିଳସନ୍ତି ମଧ୍ୟେ ପ୍ରକୃତି-କାମିନୀ
ପିନ୍ଧି କୁସୁମିତ ଶ୍ୟାମ ବସନ । ୫୮ ।

ସେ ଶ୍ୟାମ ଅଞ୍ଚଳେ  ବନେଚର ନର
କ୍ଷ ଅନନ୍ଦେ ସୁଖେ  କାଟଇ କାଳ,
ପ୍ରକୃତିମାତାର  ଅମୃତ ଚୁମ୍ବନେ
ଏଡ଼ଅଛୁ ସେ’ ତ  ନବ୍ୟ ଜଞ୍ଜାଳ । ୫୯ ।
ଗିରିବନ କୁଞ୍ଜେ  ସୁସ୍ନିଗ୍ଧ ସମୀର
ସଞ୍ଚାରଇ ପ୍ରାଣେ  ଶକତି ତାର,
ବନ୍ୟ ଫଳ-ମୂଳ  କମାଣର ଶସ୍ୟ
ଅଟେ ମାନ ତାର  ପ୍ରିୟ ଅହାର । ୬୦ ।
ଠେଙ୍ଗା, ଧାନ,  ଗୁଡ଼ଜୀ, ଗଙ୍ଗାଇ,
ସୁଅଁ, ସୁମତଳା,  ମକା, ଅତସୀ,
ସୋରଷ, ମାଣ୍ଡିଆ,;  କଦୋ, କନ୍ଦମୂଳ,
ବର ଜନମାଏ  କମାଣ ଚଷ । ୬୧ ।
ସ୍ଥାନ ବୁଝି ତରୁ  * ଢେସ୍ୱାଇ ଝୁଣ୍ଡୁଙ୍ଗା
ତୁଙ୍ଗ, ଶିମ୍ବ, ଲଉ  ରୋପଇ ମୂଳେ,
ଗଢ଼ୁଥାଏ ତାର  କାକୁଡ଼, ମସିଅ,
ପଥର ସଙ୍ଗତେ  ପଥର ଚୁଲେ । ୬୨
କେଶ ପ୍ରସାଧନେ  ଅଛୁ ଗବଗଛ
ଢେନ ସ୍ୱଚ୍ଛ ତୈଳ  ଫଳର ଗୁଚ୍ଛ,
+ ‘ସାବସୀ ଗନ୍ଧା’ର  ମୃଦୁଳ ସୁଗନ୍ଧ
କରୁଥାଏ କେତେ  ଅତର ତୁଚ୍ଛ । ୬୩ ।

---

* କୁଷକାଣ୍ଡର ସ୍ତର ଷାଖ କହିତ୍ ଘଣ୍ଟାରରେ ଦାଷ୍ଟ ଦେବାକୁ ଢେସ୍ୱଇବା କହନ୍ତି । ତଦ୍ଧ୍ୱାସ୍ୱ ବୃକ୍ଷଟି ଶୁଖି ମରିଯାଏ ।

+ ସୁଗନ୍ଧ ଶସ୍ୟ ବିଶେଷ । ଏହାକୁ ବାଟି କେଶରେ ମର୍ଦ୍ଦନ କଲେ, କେଶରାଶି ସୁପରିଷ୍କୃତ ଓ ସୁଗନ୍ଧଯୁକ୍ତ ହୁଏ । ଏହା ମଧ୍ୟ ସେମାନଙ୍କର ଗୋଟିଏ ପଣ୍ୟଦ୍ରବ୍ୟ ।

ଧାଇଁ ଧାଇଁ ଅଦା ଯୋଗଉଛୁ, ସେ ପଣେ।
'ଢର ନେବ ଭାର ସିନ୍ଧା ବସନ'
ହଁସୁଲି ତୁଲୀ ସେ ଦେଖି ନାହିଁ ଦିନେ
ଭୂମିଶଯ୍ୟା ତାର ଭୂମି ଆସନ । ୭୪ ।

ଅଧିତ୍ୟକା ଭୂମେ କଦଳୀ ପନସ
ଅମ୍ବ, ସତ୍ୟଅମ୍ବ, କେନ୍ଦୁ, ମହୁଲ
ବଇଁଚ, ଡୁରୁଡ଼ୁ, ବନକୋଳି, ଗୁର,
ଶାଳ, ଖଜୁରୀ ତ ଅଛି ବହୁଳ ।୭୫ ।

* ଚକଟା, * ଶକଟା, * ବାଇଁଗା * ସଇଗା,
* ପିତାଳୁ, * ଘୋରଡ଼ା, * ଗଡ଼ଡ଼ମଡ଼ା,
ଅଛି ତ + ଜଦାଳୀ, + ଲଡ଼ୁରୁ + ଲେପେଇ
ମାମୁସି + ବହଳ ଶାଗ, + ବରଡ଼ା, । ୭୬ ।

ଅମ୍ବ ଖାଇ ଅମ୍ବ ଠାକୁଅ ରଖଇ
ବରଷାରେ ଢରେ "କୋଇଲି ପିଠା",
ମହୁ ବାସୁଁ ମହୁ ମହୁଲ ଫୁଲେ ସେ
ଭରନ୍ନଏ ତାର ଯୋଗନ ‡ ମିଠା । ୭୭ ।

---

* ଏସବୁ ଏକ ଏକ ପ୍ରକାର କନ୍ଦ ବିଶିଷ୍ଟ ମୂଳ ପ୍ରଧାନ ଲତା ଓ ଗୁଳ୍ମ ।

† ଏ ସବୁ ଏକ ଏକ ପ୍ରକାର ଶାଖ ପ୍ରଧାନ ଉଦ୍‌ଭିଦ ଅର୍ଥାତ୍ ଏ ସବୁ ଉଦ୍‌ଭିଦର ଶାଗ ଖାଦ୍ୟ ରୂପେ ବ୍ୟବହୃତ ହୁଏ ।

‡ ନାନା ପ୍ରକାର ପିଷ୍ଟକରେ ଓ ଶିମ୍ବ ବୁଟ ମଞ୍ଜି, ଶାଗ ମଞ୍ଜି ପ୍ରଭୃତି ସିଦ୍ଧ ତରକାରୀରେ ମହୁଲ ମିଶାଇ ଖାଆନ୍ତି ।

ବରଷିଲେ ପାଣି ଫୁଟେ କେତେ 'ଛତୁ'
+'ପିଟ' +'ଭାଲୁ' +'ଖୁଦ୍ର' +'ଅଣ୍ଟୁଆ' +'ବାଲି'
+'ରୁଗୁଡ଼ା' +'ଶୁକୁଲା' +'ବହୁଡୁଣି' ପାଇ
* ତୁଣ ପାଇଁ ସେ ତ ନ ବସେ ଭାଳ । ୬୮ ।

ଜାମ୍ବୁ ଅମ୍ବଖଣ୍ଡା ସତା ବାଉଁଶରେ
ଫୁଟେ ସେ ସୁସ୍ୱାଦୁ ୧ ଶିଲୀନ୍ଧ୍ର ରଶି
କାନନଲକ୍ଷ୍ମୀର ସେ ନିସର୍ଗ ଦାନ
ଭୁଞ୍ଜଇ ସୁଖେ ସେ କାନନବାସୀ । ୬୯ ।

ଶିଆଳୀ ପତରେ ପୁଡ଼ା ସଜାଉଛି
ରଖିବ କମାଣ— ଶସ୍ୟ ଯତନେ
ବାଉଁଶ ନଳାରେ ଓଳାଇ ଗୁଡ଼ଳ
ରଖିଛି, ସେବବ ଅତିଥି ଜନେ । ୭୦ ।

ନୂଳେ ଖାଏ ମୋଠା ବଗଡ଼ା; ସରୁଆ
ସଫା ସଞ୍ଚିରଖେ ଅତିଥି ପାଇଁ
'ସୁରୁଚ' 'ମୁଗ' ସେ ଦଅଇ ସତ୍କାରେ
ନିଜେ ଶିମ୍ବ ଡଙ୍କ ଝୁଣୁଙ୍ଗା ଖାଇ । ୭୧ ।

ସରଳ ସସ୍ନେହ ମଧୁର ବଚନ
ଶୁଣିଲେ ଅଗତ ଅତିଥି ମୁହଁ
ଦ୍ରବିଯାଏ ତାର ହୃଦୟ ପଲକେ
ତରିଯାଏ ସେତକେ ଅଶେଷ ଦୁଃଖୁଁ । ୭୨ ।

---

+ ଏ ସବୁ ଏକ ଏକ ପ୍ରକାର ଛତୁ ଖାଦ୍ୟ ତରକାରୀ ରୂପେ ବ୍ୟବହୃତ ହୁଏ ।

* ତରକାରୀ । ୧ ଛତୁ ।

କୃତଜ୍ଞତା ରସେ   ପୂରିତ ହୃଦୟ
ଉପକାରୀ ପଦେ   ଢାଏ ଅଛାଡ଼ି
ଶରଧା-କୁସୁମେ   ପୂଜଇ ଆହ୍ଲାଦେ
ଆଦରେ ଭକତ   ଅର୍ଘ୍ୟ ସଜାଡ଼ି । ୭୩ ।

ନିର୍ଝରିଣି ! ତୋର   ଶୀକର ସରସ-
ସମୀର ପରଶେ   ଅମୃତ ରସ
ସଞ୍ଚରୁଛି ଯାହା   ଶୀତଳ ବକ୍ଷରେ
ପାନକରି ସେ ତ   ସଦା ହରଷ । ୭୪ ।

ନିରତେ ନିରତ   କର୍ତ୍ତବ୍ୟ ପାଳନେ
ଅବିଶ୍ରାନ୍ତ ଦେଖି   ତୋର ସଞ୍ଚାର
କର୍ମ ନିରତ   ଶୈଳ ସଞ୍ଚରଣେ।
ଦୃଢ଼ ମାଂସପେଶୀ   ହୃଦୟ ତାର । ୭୫ ।

ଉଠିଲେଣି ଭାନୁ   ମଧ୍ୟାହ୍ନ ଗଗନେ
ହେମ-ହାରେ ହେଲେ;   ତୋ ବକ୍ଷ ମଣ୍ଡି
ପ୍ରତିବିମ୍ବ ଛଳେ   ବିଳସି ତୋ ହୃଦେ
ନେଉଛନ୍ତି କି ସେ   ସନ୍ତାପ ଖଣ୍ଡି ।୭୬।

ବିଶ୍ୱକର୍ମୀ ଶାଣ—   ଯନ୍ତ୍ରର ସନ୍ତାପେ
ଜ୍ୱାଳାମୟ ପରି   ତନୁ ତାଙ୍କର
ସ୍ନିଗ୍ଧ ଶୀତଳତା   ଆଦର ତୋ ବକ୍ଷେ
ଅବତରନ୍ତି କି   ପ୍ରତିବାସର ।୭୭।

ହସ୍ତରୁ ହସ୍ତୁ ସେ   ଅବତରି କମେ
ସ୍ୱଚ୍ଛକୁଣ୍ଡେ କରି   ଅବଗାହନ
ତୋ ତୀର-ପ୍ରାଚୀରେ   ଗୁଳ୍ମ ଲତା ଅଙ୍ଗେ
ବାନ୍ଧି ଦେଉଛନ୍ତି   ଜ୍ୟୋତି-ରତନ ।୭୮।

ରତ୍ନମାଳା ପ୍ରାଏ ଇନ୍ଦ୍ରଧନୁ ମାଳ
ମୟୂଖ ସମ୍ପାତେ ଉଠେ ଝଲକି,
ବିଳାସିନୀ ବେଶେ ଦେଖାଉଛୁ ଏବେ
ନବ ଇନ୍ଦ୍ରଜାଲେ କେତେ ଭେଲକି ।୨୯।

ସମୀର ଲହରେ ଇନ୍ଦ୍ରଧନୁ ମାଳ
ଝଲକାଇ ଝାଡ଼ି ରତ୍ନକଣିକା
ଶୁଣି ଦେଉ ? ପୁଣି ଲଭି ଯାଉଅଛୁ
ଏ ମୋହନ ଛବି କ୍ଷଣି କ୍ଷଣିକା ।୩୦।

ପ୍ରବାହ ପତନେ ନୀହାରିକା ସମ
ପ୍ରସରଇ ଯାହା ଶୀକର ରାଶି,
ବିକର୍ଷିଣୀ ତନୁ ଶୀତଳାଉଁ 'ତନୁ'
ଉଠେ କିବା ବାଷ୍ପ- ରାଶି ଉଦ୍‌ଭାସି ।୩୧।

ଲତା-ଦୋଳା-ସନେ ନନ୍ଦନ ବିହଙ୍ଗ
ବାଉଛି ମଧୁରର ସୈଦବ ବଂଶୀ,
ବନଦେବୀ କାଶ- କୁସୁମ ଚାମର
ଢୁଳଉଛନ୍ତି ଧୀରେ ତୋ ତୀରେ ବସି ।୩୨।

ସୁର-ସୁନ୍ଦରୀଙ୍କ ପୁଷ୍ପାଞ୍ଜଳି ପ୍ରାଏ
ପ୍ରଜାପତି ପନ୍ତି ଅବରୋହଣେ
ଯୁଗପତେ ରୁଣ୍ଡି ବସି ହୋଇ ପୁଣି
ଖେଳୁଛନ୍ତି ସୁଖେ ତୋର ଗହଣେ ।୩୩।

ତୋ ଶୀକର ସ୍ନିଗ୍ଧ ଶୀତଳ ସମୀର
ଖେଳୁଛି ମୃଦୁଳେ ଉଡଁସି ଖେଳ
ଶ୍ରାନ୍ତ ପାନ୍ଥ ଶ୍ରାନ୍ତି- ନାଶେ ଭୂମାଙ୍କର
ସେ କି ସୁଧାମୟ ଅଞ୍ଚଳ ତଳ ।୩୪।

ପୋଛୁ ସେ ଅଞ୍ଚଳେ ଶ୍ରାନ୍ତ ମୋର ତନୁ
ଅପନ୍ତ ସୋହାଗେ ବିଶ୍ୱଜନନୀ,
ଦେଖ ବସ୍ତ୍ର । ଏଠୁ ସୁଷମା-ମନ୍ଦରେ
ଲେଟେ ନିର୍ଝରିଣୀ ହୃଦ-ପାବନୀ ॥୫॥

ଯୋଗବଳ-ଦାୟୀ ପବିତ୍ର ସଲିଳା
ବିଷ୍ଣୁପଦ ଧୋଇ ବହିଲେ ଝର
ଗିରୀଶ ଚୂଡ଼ାରୁ ଖସି ବ୍ରାହ୍ମୀ-ହ୍ରଦେ
ସଞ୍ଚାରେ ତନ୍ମୟେ ସୁଧା ଲହରୀ ॥୬॥

ଭଗୀରଥଙ୍କର କଠୋର ସାଧନେ
* ବ୍ରାହ୍ମ-କ ମଣ୍ଡଳ ଝର ଉଲ୍ଲାସେ
ଓହ୍ଲାଇ ଆସିଲ ସୁର-କଲ୍ଲୋଳିନୀ
+ ଗିରୀଶ ଶିଖରୁ ଯେବେ କୈଳାସେ ॥୭॥

(୧) 'ବସୁ' ସ୍ରୋତେ ପୂର୍ବ— ସାଗରେ ଗମିଲ
(୨) 'ଭଦ୍ରା' ନାମେ ବହି ଗଲା ଉତ୍ତରେ,
(୩) ଶ୍ୱେତା ସ୍ରୋତେ ହେଲ ପଶ୍ଚିମ ବାହିନୀ
ଲେଟି ଗ୍ରାମ ଗିରି ବନ ପ୍ରାନ୍ତରେ ॥୮॥

ଭାଗୀରଥୀ ନାମ ବହିଲ ଦକ୍ଷିଣେ
ପ୍ରବାହିତା ହୋଇ 'ଅଲକାନନ୍ଦା',
ସୁଶ୍ୟାମଳ କରି ସାଗର ପ୍ରଦେଶ
ହେଲ ପାପୀ ତାପୀ ତାରଣୀ ଫନ୍ଦା ॥୯॥

---

* ବସ୍ତୁତଃ 'କ' ଅର୍ଥାତ୍ ଜଳବର୍ଷୀ—ଧୂମାଳୀ ମଣ୍ଡଳରୁ ।
+ ଗିରିଶ୍ରେଷ୍ଠ ହିମାଳୟ ।
୧—ବ୍ରହ୍ମପୁତ୍ର । ୨—ଅକ୍ଷତ । ୩—ସିନ୍ଧୁନଦ ।

ଭୋଗବତୀ ସ୍ରୋତେ ଭୂଗର୍ଭେ ପ୍ରବେଶି
ଅଗଣିତ ତୀର୍ଥ କରି ସୃଜନ
ଅଗଣିତ ଉତ୍ସେ ହୋଇ ଉତ୍ସାରିତ *
ସ୍ଥାବର ଜଙ୍ଗମ କରେ ପାଳନ ।୧୦।
ସନ୍ଧ୍ୟା ବନ୍ଧୁଙ୍କର ବିଭୂତି ବିକାଶେ
ରଚିଛୁ ନିଭୃତ ସୃଷ୍ଟିମାଳାଙ୍କ ।
ଅବନୀ ପୃଷ୍ଠରେ ଗିରିବନ କୁଞ୍ଜେ
ପ୍ରବାହିତ ତୋର ପବିତ୍ର ଧାର ।୧୧।
ଭକତ ର ଭାବେ ଭୋଳା ମହେଶ୍ୱର
ଛାଡ଼ି ନ ପାରନ୍ତି ଭକତ ପାଶ,
ବାଣେଶ୍ୱର ନାମ ବହି, ଏ ଅଞ୍ଚଳେ
ସ୍ୱୟମ୍ଭୂ, ସ୍ୱ-ରୂପେ କରନ୍ତି ବାସ ।୧୨।
ବିଶ୍ୱବ୍ୟାପୀ ବିଭୁ ହେଲେହେଁ, ଭକ୍ତର
ଭକ୍ତି ଅନୁସରି ବିଗ୍ରହ ବହି
କାହିଁ କେତେ ରୂପେ ବିଲସନ୍ତି ବିଶ୍ୱେ
ଭକତର ମନୋ- ମନ୍ଦିରେ ରହି ।୧୩।
ଅର୍ଦ୍ଧନାରୀଶ୍ୱର, ପ୍ରଖ୍ୟାତ ବିହିଲେ
ଅର୍ଦ୍ଧ ଅଙ୍ଗେ ସେ ତ ଗିରିଜା ଦେଇ
ଗଙ୍ଗାଧର ହେଲେ ଆଦରେ ଲୋଟାଇ
ବ୍ୟୋମକେଶେ ଗଙ୍ଗା ଲହରୀ ବେଣୀ ।୧୪।

---

* ପୁରାଣକଥିତ ମତେ ଭୋଗବତୀ ସ୍ରୋତ ଭୂଗର୍ଭରେ ପ୍ରବେଶ କଲା । ଭୂଗର୍ଭ ଅଗ୍ନିଗର୍ଭପୂର୍ଣ୍ଣ ଉତ୍ତପ୍ତ ଥିବା ଭୌଗୋଳିକ ସତ୍ୟ । ସୁତରାଂ ଅଗ୍ନି ସଙ୍ଗେ ଜଳ ରହି ନ ପାରି ଉତ୍ସ ମୁଖରେ ଉତ୍ସାରିତ ହେବା ସ୍ୱାଭାବିକ ।

ସେହୁ ଗୌରୀ ମୁଁ ତ　　ପ୍ରକୃତ ରୂପିଣୀ
ବ୍ୟାପି ରହିଅଛୁ　　ଏ ଚରାଚରେ
ଶକ୍ତିମୟ ଶିବ　　ଶିବମୟ ବିଶ୍ୱ
ଧ୍ୟାନେ ନିରେଖନ୍ତି　　ବିବୁଧ ନରେ ।୯୫।

ପ୍ରସରଇ ଯାର　　ଲଲାଟ-ଲୋଚନୁ
ବିଶ୍ୱଦାହୀ ବହ୍ନି　　ପ୍ରଚଣ୍ଡ ଜ୍ୱାଳା,
ଦକ୍ଷିଣ ନୟନେ　　ଉଦ୍ୟଦିନକର
ପ୍ରକାଶେ ପ୍ରଖର　　ମୟୂଖମାଳା ।୯୬।

ସ୍ୱଭାବେ ଅଟନ୍ତି　　କୃଶାନୁରେତା ସେ,
ବିଷଧର ଫଣୀ　　ଅଙ୍ଗେ ଭୂଷଣ,
ସାଗର ସଂଜାତ　　କାଳକୂଟ ରାଶି
କରିଛନ୍ତି ନିଜ　　କଣ୍ଠେ ଧାରଣ ।୯୭।

ପ୍ରଳୟ ତାଣ୍ଡବେ　　ପଦକ୍ଷେପେ ଯା'ର
ପ୍ରଳୟ ଅନଳ　　ଉଠେ ଉଦ୍‌ଭାସି
ସେ ଅନଳ ଗର୍ଭେ　　ଡମ୍ବରୁ ଡିଣ୍ଡିମେ
ଫାଟିପଡ଼େ ତପ୍ତ　　ବ୍ରହ୍ମାଣ୍ଡ ରାଶି ।୯୮।

ଭସ୍ମୀଭୂତ ହୁଏ　　ପୋଡ଼ି "ଚଟଇଟେ"
ସେ ବ୍ରହ୍ମାଣ୍ଡ ମାଳା　　ଜଳନ୍ତ ସଙ୍ଗେ
ସେହୁ ତପ୍ତ ବିଶ୍ୱ　　ବ୍ରହ୍ମାଣ୍ଡ ବିଭୂତ
ବୋଲି ହୁଅନ୍ତି ସେ　　ଆପଣା ଅଙ୍ଗେ ।୯୯।

ମହାରୁଦ୍ର ତେଜେ　　ତେଜୋବନ୍ତ ସେ ତ
ବିଶ୍ୱ-ବିଷ-ବହ୍ନି　　ସନ୍ତାପ-ସିନ୍ଧୁ,
ବାମ ଅଙ୍ଗେ ମାତ୍ର　　ମୋର ଅଧିଷ୍ଠାନ,
ବାମ ନେତ୍ରେ ସେଣୁ　　ବିରାଜେ ଇନ୍ଦୁ ।୧୦୦।

ସୃଷ୍ଟି ସ୍ଥିତ କାଳେ    ସେ ପ୍ରଚଣ୍ଡ ତାପ
ସହିବ ରଖନ୍ତି    ଆପଣା ଅଙ୍ଗେ,
ଲୋଡୁଥାଏ କେଣେ    ସନ୍ତାପ ଶମନୀ
ସୁର-କଲ୍ଲୋଳିନୀ    ଲୋଲ ତରଙ୍ଗେ ।୧୦୧।

ଅଗଣିତ ସ୍ରୋତେ    ଝରୁଥାଏ, ଧୋଇ
ଶୁଭ୍ର ଅଙ୍ଗୁ ଶୁଭ୍ର    ବିଭୂତି ରାଶି;
ସେ ବିଭୂତି ପୁଞ୍ଜେ    ଅସଂଖ୍ୟ ବ୍ରହ୍ମାଣ୍ଡ
ମୋହିବ ଇଙ୍ଗିତେ    ଉଠେ ଉଦ୍‌ଭାସି ।୧୦୨।

ବ୍ୟୋମକେଶଙ୍କର    କେଶ ମହାବ୍ୟୋମ
ଧୋଟି କୋଟି ବିଶ୍ୱ    ଅଛୁ ଅବର,
ସେ ବିଶାଳ କେଶେ    ଲୋଟି ସୁରଧୂନୀ
ବ୍ରହ୍ମାଣ୍ଡ ପାବନୀ    ପଡ଼ୁଛୁ ଝର ।୧୦୩।

ସେହି ଗଙ୍ଗାଧର    ଏହି ବାଟେଶ୍ୱର
ସେହି ସୁରଧୂନୀ    ଏ ନିର୍ଝରଣୀ
ସେହି ଗୌରୀ ମୁହଁ    ଅନ୍ଧାରୀ କୁମାରୀ
କଦମ୍ବ କୂଳର    ନିଷ୍ପ ବାରଣୀ ।୧୦୪।

ଥିଲା ଦିନେ ଏହି    ପବିତ୍ର ଭୂଖଣ୍ଡ
ବିଜନତା ଦେବୀ—    ବିଳାସ ସ୍ଥଳୀ
ନିଭୃତେ ବିକଶି    ଝରି ପଡୁଥିଲା
ଅଗଣିତ ବନ୍ୟ    କୁସୁମ-କଳି ।୧୦୫।

ବାଜି ଉଠୁଅଛି    ଅଜି ଯହିଁ ମନ୍ଦେ
ମୂରଜ ମନ୍ଦିରା    ସଙ୍ଗୀତ ତାଳେ,
ଶ୍ୱାପଦ ସଞ୍ଚାରେ    ଖଗ ମୃଗ ତହିଁ
ତୋଳୁଥିଲେ ରବ    ଉଛନ୍ଦେ କାଳେ ।୧୦୬।

ଗ୍ରାମପଟେ ଯହିଁ ଅମ୍ରତୋଟା ମାଳେ
ନନ୍ଦାଦେ ବାଳକେ ଖେଳନ୍ତ ଦୋଳ
ଖେଳାଉଥିଲ ତ ସ୍ତନ୍ୟଦାନେ ତହିଁ
ଶାର୍ଦ୍ଦୂଳୀ ଶାବକେ, ପୁଚ୍ଛ ଅନ୍ଦୋଳ ।୧୦୭।
ଖେଳାରଙ୍ଗେ ଯହିଁ ଯୁଝନ୍ତ ଶିଶୁଏ
ଚପଳତା ବଶେ ଭର କଳହ
ଗଚ୍ଛିଛନ୍ତ ସିନା ଧନେ ସେ ଅଟ୍ଟୋ
*ଶାର୍ଦ୍ଦୂଳ ବରାହ ରଣ ବରାହ ।୧୦୮।
ନନାଦତ ଅଳ କୂଳ୍ପାଧାଟେ, ଯାହା
କୁରଙ୍ଗୀନୟନା ଶିଞ୍ଜା-ରୁଣିଚେ
ରଞ୍ଜି ଦେଉଥିଲ କାଳେ ମହାବଳ
ତା ଭଳ କୁରଙ୍ଗୀ— କଣ୍ଠୁ ଶୋଣିତେ ।୧୦୯।
ଗ୍ରାମେ ଗ୍ରାମେ ଯହିଁ ସଜେ ଅଟ୍ଟାଳିକା
ମାନବ କୁଳର ସ୍ୱର୍ଗ ନିବାସ,
ଶିଶୁଲନ୍ନ କଣ୍ଠେ ନିଃଶଙ୍କେ ବାନରେ
କରୁଥିଲେ ହେଲେ ତହିଁ ବିଳାସ ।୧୧୦।
+ ପଞ୍ଚକୋଶୀ କ୍ଷେତେ ଶାରଦ ସମୀରେ
'ସୁସୁ'କାର ଲସେ୍ୟ କମଳା ଅଳି
ଖେଳୁଥନ୍ତ ଯାହା ତରଙ୍ଗେ ତରଙ୍ଗେ
ଶ୍ୟାମଳ ବସନେ ସ୍ୱତନ୍ତ୍ର ସାଜ ।୧୧୨।

---

* ଶାର୍ଦ୍ଦୂଳ ଷଣ୍ଢକାରର ଦନ୍ତାବଳ ଅଳିଷ୍ଠ ଅନ୍ୟ ଜୀବଜନ୍ତୁଙ୍କୁ ଶିକାର କରିପାରେ ନାହିଁ । ଉରସ୍ଥଙ୍କର ଉପୁଙ୍କର ସୁଖ ସଂଘର୍ଷରେ ବନାଞ୍ଚଳ ପ୍ରକମ୍ପିତ ହୋଇଉଠେ । ଏହା ପ୍ରତ୍ୟକ୍ଷୀଭୂତ ଘଟଣା ।

+ ପଞ୍ଚକୋଶୀ ବାହାଳ ନାମରେ ପ୍ରସିଦ୍ଧ ବଣ୍ଡାଳ ଧାନ୍ୟକ୍ଷେତ୍ର ।

ହେମନ୍ତେ ହେମାଙ୍ଗୀ ହେମହାର ସମ
ପକ୍ୱ ଧାନ୍ୟରାଶି ଶରଧା ଭରେ
ଦଯ୍ୱା ଜରଜର ହୃଦୟେ ଅହ୍ଲାଦେ
ବାଡରନ୍ତି ପୁଣି ମାନବ କରେ । ୧୨୩ ।
ନ ଥିଲ ତ ତହୁଁ ଏ ମହା ଅବେଗେ
କୃପା ଅଧିଷ୍ଠାନ କମଳାଙ୍କର
*'କୁମଳା' ପୂରବ ପଲ୍ଲ୍ବ ବକ୍ଷରେ
ବହୁଥିଲା ମାଡ ଚିର ନିର୍ଝର । ୧୧୪ ।
†କୂର୍ମିକୃତ ବପୁ କୁଳୀର ସଂକୁଳ
ଥିଲ କାଳେ ସେହୁ ନିର୍ଝର କୂଳ
ବସ୍ତ୍ରାବୃତ ଦାଢ଼ୁ ସ୍ୱପୋଥ ବଅାଇ
ଘୁଞ୍ଚି ଯାଉଥିଲେ ବସହ କୂଳ । ୧୧୫ ।
କୁଳୀର କୁଳରେ ଭଦ୍ରର ଏ ଉର୍ବୀ
ଲକ୍ଷି ବନେଚରେ ଅଦେମବାସୀ
ଭାଷନ୍ତି ଅଦ୍ୟାପି, କଙ୍କଡ଼ା ଦେବତା
ଦେଇଛନ୍ତି ସବୁ ସମ୍ପଦରାଶି । ୧୧୬ ।

---

* ସ୍ୱନାମଖ୍ୟାତ ବୃକ୍ଷ ବିଶେଷ ।

† ପୂର୍ବେ ଏ ଅଞ୍ଚଳରେ ଅତି ବୃହଦାକାର କଙ୍କଡ଼ା ଥିଲେ । ସେହୁ କଙ୍କଡ଼ା ଏଠାର ଦେବତା । ତାଙ୍କ ଯୋଗେ ଖୋଦିତ ପ୍ରକାଣ୍ଡ ଆକାରର ଗାତିମାନ ନାନା ସ୍ଥାନରେ ଅଛି । ସେହୁ କଙ୍କଡ଼ା ଦେବତ ଙ୍କୁ ଅଠଗଡବାସୀମାନେ ଶ୍ରେଷ୍ଠ କର ନେଇଥିବାରୁ ବଣାଇର ପୂର୍ବକାଳର ବୁଢ଼ାମାନେ ତାହାଁର ଅନୁସନ୍ଧାନରେ ଯାଇ ଅଠଗଡ଼ରୁ 'କନ୍ତକୁଆଁରି' ଦେବତାଙ୍କୁ ଆଣିଥିବା ଏ ଅଞ୍ଚଳର ପାହାଡ଼ୀ ଭୂୟାଁ ଜାତିର ବୃଦ୍ଧମାନେ କହନ୍ତି ।

| | |
|---|---|
| ଅଗଣିତ * ପଙ୍କୁ | ଭରତ ଶିଶିରେ |
| ପ୍ରମତ୍ତ ଶୂକରେ | ଲୋଟି ସେ ପଙ୍କେ |
| ଶୀତଳାଙ୍ଗ ଥିଲେ | ବୀର୍ଯ୍ୟବର୍ଦ୍ଧି ତପ୍ତ |
| ସ୍ୱବପୁ କରି ସେ | ନିତ ନଃଶଙ୍କେ । ୧୧୭ । |
| ଶିକାର କୁଳର | ଅତର୍କିତ ଭାବ |
| ଚତୁର ଶାର୍ଦ୍ଦୂଳ | ଭଲଷି ଗୀତରେ, |
| ମେଣ୍ଟାଉ ଥିଲା ତ | ତା ରୁଧିର ତୃଷା |
| ଘାଣ୍ଟ ଜଟି ତାଙ୍କ | କଣ୍ଠ ରୁଧିରେ । ୧୧୮ । |
| †କେବେ ମହାବଳୀ | ଶିକାର ଭଲଷି |
| ଦ୍ରୁମ କାଣ୍ଡେ ଦୃଢ଼େ | ସ୍ୱଭାବ ମାରି |

* ଅରଣ୍ୟର ଶାଦ୍ୱଳ ଭୂମିରେ ଜଳମଗ୍ନ ସ୍ଥଳ ଲକ୍ଷ୍ୟକରି ଶୂକରମାନେ ମାଡ଼ ଦେଇ ସୁକୋମଳ ପଙ୍କଶଯ୍ୟା ରଚନା କରି ଶୀତକାଳର ଗମ୍ଭୀର ଗ୍ରହରେ ତହିଁରେ ଲୋଟନ୍ତି । ଏହି ପଙ୍କଶଯ୍ୟାକୁ 'ପଙ୍କୁ' କୁହାଯାଏ । ଏହି ପଙ୍କୁମାନଙ୍କରେ ମହିଷ ବରାହ ପ୍ରଭୃତି ସ୍ଥୂଳଚର୍ମ ପଶୁମାନେ ମଧ୍ୟ ଲୋଟିବାର ଦେଖା-ଯାଏ ।

† ଶ୍ୱାପଦ ପଶୁ ନିଜ ପଞ୍ଝାଦ୍ୱାରା ବୃଥି ଧରିବାକୁ ଜାବ କୁହାଯାଏ । ସାଧାରଣତଃ ବ୍ୟାଘ୍ର ମୃଗାଦି ଶିକାର ପ୍ରାଣୀର କଣ୍ଠରେ କାମୋଡ଼ ଉଲ୍ଲଙ୍ଘନରେ ନିଜର ଦେହକୁ ନିପତିତ କରି ତାକୁ ଓଲଟାଇ ନେଇ ଶିକାରର ବେକ ମୋଡ଼ ଭାଙ୍ଗିଦିଏ । ବୃହତ୍କାୟ ବଳିଷ୍ଠ ଗୟଳ ପ୍ରଭୃତିଙ୍କୁ ବାଘ ଉଲ୍ଲିଖିତ ପ୍ରକାରେ ଆକ୍ରମଣ କରି ଗୋଡ଼ର 'ଧଳ' ଶିରା ପ୍ରଭୃତି ଛିଣ୍ଡାଇ ଶିକାରର ବଳ ହ୍ରାସ କରିବା ପରେ ସ୍ୱଚ୍ଛନ୍ଦରେ ମାରି ପକାଇବାର ଅଭିଜ୍ଞ-ମାନେ କହନ୍ତି । ଉକ୍ତ ପ୍ରକ୍ରିୟାରେ ସମସ୍ତ ବଳ ପ୍ରୟୋଗଦ୍ୱାରା ଆକ୍ରମଣ ଓ ଆକର୍ଷଣ କରିବାରେ ଛିନ୍ନଭିନ୍ନ ହୋଇ ବ୍ୟାଘ୍ର ମଧ୍ୟ କେବେ କେବେ ବିପନ୍ନ ହୋଇଥାଏ । କାରଣ ସେତେବେଳେ ଜାବ ଛଡ଼ାଇନେବାର ଉପାୟ ନ ଥାଏ ।

ଝଙ୍କିରଣ ଛାଙ୍କ ଦୁର୍ବାର ବକମ
ଦେଉଥିଲା 'ସବୁ ସୁକୃତ ସାର' । ୧୧୯ ।
ମନ୍ଦ୍ଦପ ବରାହ ଶମ୍ବର ଶାର୍ଦ୍ଦୂଳ
ଗଜଙ୍କ ଦାପଟେ ଶାଦ୍ୱଳ ସ୍ଥଳୀ
ଦଳି ହେଉଥିଲା ଦବାନଳ, ଯହୁଁ
ଶୋଭେ ଏବେ ଶସ୍ୟ- କ୍ଷେତ୍ର ଅବଳୀ । ୧୨୦।
ଆଜ ସୌଧମାଳେ ଏହୁ ଜନପଦ
ଶୋଭୁଛୁ ତ ବ୍ରାହ୍ମୀ ଛଟିମା ଛଟେ
ଏହୁ ଖଣ୍ଡାପାଠ ଦେଖୁଛୁ ତା ଛବ—
ପ୍ରଭବମ୍ଭ ବ୍ରାହ୍ମୀ— ହୃଦ୍‌ୟ ପଟେ ।୧୨୧।
ନାରଚେଛ ନଗରୀ ପୁଣ୍ୟ ଶୋଭାମୟୀ
ଅଦର * ଅମରା— ବଢ଼ୀ ଗୌରବ
ନନ୍ଦନ କାନନ ସମ ପୁଷ୍ପୋଦ୍ୟାନୁଁ
ପ୍ରସରଇ ସଦା ସ୍ନିଗ୍ଧ ସୌରଭ । ୧୨୨।
ଲଟିଅଛୁ ଶଢା ଭକ୍ତ ମାରାଜନା
ଭକ୍ତବନ୍ଧୁ 'ଜଗ- ମୋହନ' ଙ୍କର
ପବିତ୍ର ଉତ୍ସବେ ଶଙ୍ଖ-ଘଣ୍ଟାନାଦ
ଉଛୁଳ ଉଠୁଛୁ ଗଗନବର । ୧୨୩ ।
ବାଜୁଥିଲା ଯେଉଁ ସୁଦୂର ଅତୀତେ
ସେ ମୋହନ ବେଣୁ କାଳନ୍ଦୀ କୂଳେ
ରାସନୃତ୍ୟ ରଙ୍ଗେ ଶ୍ରୀରାଧା ମାଧବ
ବିଳସୁଥିଲେ ଯେ କଦମ୍ବ ମୂଳେ । ୧୨୪।

---

* ଅମରାବତୀ = ଇନ୍ଦ୍ରନଗରୀ । ଅର୍ଥାନ୍ତର ବଣାଇର ପୁଣ୍ୟଶୀଳା ରାଣୀଙ୍କ ନାମ 'ଅମରାବତୀ' ।

ବନ୍ଧୁଥିଲା ପରି          ଉଜାଣି ଯମୁନା
ଶ୍ୟାମଙ୍କ ବିରହ          ବଇଁଶୀ ସ୍ୱନେ
ପାଗଳିନୀ ପରି          ହୋଇ ଗୋପିନୀଏ
ଭ୍ରମୁଥିଲେ ଛନ୍ନେ          ବିଜନ ବନେ । ୧୨୫ ।

ନାହିଁ ଆଜ ସେହି          ରାସ ବିନୋଦିନୀ
ସେ ବୃନ୍ଦାବନେ ସେ          କଦମ୍ବ ମୂଳେ
ମାନିନୀର ମାନ          ଭଞ୍ଜନେ ଅଳତା
ନ ଶୋଭଇ ଶ୍ୟାମ —          ଶିଖଣ୍ଡ ଚୂଳେ ।୧୨୬।

ଅଛି ତ ଯମୁନା          ନାହିଁ ସେ ଘାଟିଅ
ଅଛି କୁଞ୍ଜ, ନାହିଁ          କୁଞ୍ଜ ବିହାରୀ
ମାବ ସ୍ମୃତି ରୂପେ          ବିରାଜିତ ସେହି
ମୋହନ ମୂରତି          ମୁରଲୀଧାରୀ ।୧୨୭।

'ବସନ୍ତେ କୋମଳ          ମଳୟ ସମୀରେ'
ଭାସିଗଲା ଥରେ          ସେ ବେଣୁ ସ୍ୱନ,
ପ୍ରତିଧ୍ୱନି ତାର          ଯୁଗ ଯୁଗାନ୍ତରେ
ସଞ୍ଚରି ମୋହୁଛି          ମାନବ ମନ ।୧୨୮।

ପୂଜିତ ସେ ରୂପ          ସୁରମ୍ୟ ମନ୍ଦିରେ
ସୁଜ୍ଜିତ ବଳିତ          କୁସୁମେ ସହି,
ଗୁଞ୍ଜରୁ ଥିଲା ତ          କୀଚକ ନିକୁଞ୍ଜେ
ସେ ଦୂର ଅତୀତେ          ସମୀର ତହିଁ ।୧୨୯।

ଏ ଭ୍ରାନ୍ତି ପ୍ରବାହେ          ଅବଗାହି ସୁଖେ
ଚଳୁଥିଲେ ବନ୍ୟ          ମନୁଷ କୁଳ,
ଦାନବ ବିଗ୍ରହ          ଦର୍ପିତ ପଦବୀ
ଜଳୁଥିଲା ଭ୍ରାନ୍ତି          କୂଳ ଫକୁଳ ।୧୩୦।

ରକ୍ତାକ୍ତ ଲୋଚନେ ଉଭୟିଁ ଭୀଷଣେ
ଦେବନ ଯୂଥପତ ଯେବେ ସମରେ
ମାତ ହେଉଥିଲେ ଦଳ ବେଣୁ କୁଞ୍ଜ
ଧର ଧୂଳି ରଙ୍ଗ ଚୋଲ ଅମ୍ବରେ ।୧୩୧।

ଦେଖୁଥିଲା ସେହୁ ଭୀଷଣ ସଂଗ୍ରାମ
ଖଣ୍ଡାଧାର ତଟେ ଏ 'ବୁଢ଼ା' ବସି
ଝଲକିବା ଯାଏ * କୈବର୍ତ୍ତ ଯୁଝର
ତୀକ୍ଷ୍ଣ ଖଡ୍ଗ ମୁଖେ କାଦମ୍ବ ଅସୀ ।୧୩୨।

ଏହୁ ଖଣ୍ଡା ପାଇଁ— ଶିଖରେ ସେ କାଳେ
ହୃଦଲେ କାଦମ୍ବ— ସୌଭାଗ୍ୟ ରବି
ଖଣ୍ଡାଧାର ସ୍ରୋତେ ଅବଗାହି ଏବେ
ଦେଖ ବସ୍ତା ସେହୁ ଅତୀତ ଛବି ।୧୩୩।



---

*ବଣାଇ ରାଜ୍ୟରେ କଦମ୍ବ ବଂଶୀ ରାଜା ଆଗମନ ପୂର୍ବେ କୈବର୍ତ୍ତ ରାଜା 'ଶ୍ୟାମ' ରାଜତ୍ୱ କରୁଥିଲା । ତାଙ୍କୁ ପରାଜୟ କର କଦମ୍ବ ବଂଶୀ ରାଜା ରଘୁନାଥ ଦେଓ ବଣାଇରେ ନିଜ ବଂଶର ପ୍ରତିଷ୍ଠା କର ଅଛନ୍ତି ।

# ଦ୍ୱିତୀୟ ସର୍ଗ

ବାଜି ଉଠିଲାଣି ଖଣ୍ଡ୍ରା ପାଞ୍ଚ ତଟେ
'ବସନ୍ତ'ର କଣ୍ଠ— ମଧୁ ଝମକ
କୁଞ୍ଜେ କୁଞ୍ଜେ ଡାକ ସଞ୍ଚର ଗଲାଣି
ଛନ୍ଦ ଉନ୍ମାଦକ ଗୁଚ୍ଛ ଚମକ ।୧।
ମଧୁ ଆଗମନେ ମଳୟ ମରୁତ
ସାଙ୍ଗ ସାଙ୍ଗ ବାଣୀ ପ୍ରସ୍ତୁତ, ଧୀରେ
ସଞ୍ଚରଇ ଚିରେ କାନନ ନିକୁଞ୍ଜେ
କୁଲ୍ଲା ନିର୍ଝରିଣୀ ତଟିନୀ ତୀରେ ।୨।
ଖସି ପଡ଼ୁଅଛି ପୀତ ପତ୍ରାବଳୀ
ଶ୍ଳଥ ବୃନ୍ତେ ବୃକ୍ଷ ବକ୍ଷ ବରଜି
ଚକ୍ର ବିଘୂର୍ଣ୍ଣନେ ତରଙ୍ଗ କମ୍ପନେ
ବାୟୁ ସ୍ରୋତେ କେତେ ନୃତ୍ୟ ସରଜି ।୩।
ଭାସି ଯାଉଛନ୍ତି ବନ୍ଧୁ ବନାନ୍ତରେ
କେତେ କ୍ଷୁଦ୍ର କୀଟ ସେ ପର୍ଣ୍ଣବାସୀ,
ଭାସି ଯାଉଅଛି ଏସନେ ମାନବ
ଖେଦ କଟେ, କାଳ ତରଙ୍ଗ ଗ୍ରାସି ।୪।
ଘୂର୍ଣ୍ଣି ଯାଉଅଛି ଧୀରେ ଧରଣୀରୁ
ଶିଶିରେ ପ୍ରକୃତ— ବଦନ ମାଜି
ଅବସାନ କାଳ ବିଲକ୍ଷି, ଶିଶିର
ସ୍ୱକରେ ଯତନେ ତା ତନୁ ସାଜି ।୫।

ମାଣିକ୍ୟର ମାଳା ଗୁନ୍ଥି ସଙ୍ଗତନେ
ସିନ୍ଦୂର ଦେଲଣି ଅଶୋକ ଗଳେ
ମଞ୍ଜୁଳ ଧାତକୀ ସଦେଗ ଲାକ୍ଷା ରସ
ରଞ୍ଜିଲଣି କର ଚରଣ ତଳେ ।୬।

ଉଜ୍ଜ୍ୱଳ ନୟନେ କଜ୍ଜଳ ରଞ୍ଜିଲ
କଜ୍ଜ୍ୱଳ ପକ୍ଷୀର ସ୍ୱଚ୍ଛ ସଞ୍ଚାରେ,
ଭୃଙ୍ଗରାଜ ପୁଚ୍ଛ ନୀଳ ପାଟଫୁଲ
ଖଞ୍ଜି ଦେଲଣି ସେ କବରୀ ଭାରର ।୭।

ଅସ୍ୱଚ୍ଛ ଚନ୍ଦନ ରଚନା ପତ୍ରଏ
ସ୍ତନେ ଠାବେ ଠାବେ ଅତଣ୍ଡ୍ରୀ ବଲ୍ଲି,
ଅଙ୍ଗରାଗ ପୀତ ପରାଗ ପୂରିତ
ଶୋଭିଲଣି ନାଗ କେଶର କଳୀ । ୮ ।

ଲଳିତ ସଞ୍ଚାରେ ଆସିଲା ବସନ୍ତ
ଲୁଣ୍ଠିଗଲା ଧୀରେ ଶିଶିର ବାଳା
ସେ ବସନ୍ତ ଗଳେ ସିନ୍ଦୂର ମଞ୍ଜୁଳେ
ମାଧବୀ କୁସୁମେ ବିଜୟା ମାଳା ।୯।

ଏ ମଧୁ ମଧ୍ୟାହ୍ନେ ତୋ ତୀର କାନନେ
କହ ଖଣ୍ଡାଧାର ! କେ ଯୁବାମଣି ?
ଭ୍ରମୁଛନ୍ତି ଏ ଯେ ପାରଧି ବେଶରେ
ମୂର୍ତ୍ତିମନ୍ତ ଶୌର୍ଯ୍ୟ ସୌନ୍ଦର୍ଯ୍ୟ ଖଣି ।୧୦।

ସୁତୀକ୍ଷ୍ଣ ନାସିକା ଅସୀମୂନ ସର
ପ୍ରକାଶକ ସ୍ୱତଃ ଲକ୍ଷ ସ୍ତୁତୁସା,
ବୈରୀ ଦଳ ଦର୍ପ ଦଳନୀ ଦାମିନୀ
ନୟନ ଯୁଗଳେ ରହିଛି ପୂରି ।୧୧।

ମନେ ହୁଏ ପ୍ରତେ ଯେ ଭଙ୍ଗାଙ୍ଗେ ସତେ
ଫାଟିଯିବ ମେରୁ ଶୈଳ 'ଗର୍ବ'
ମାନିନୀର ମାନ ଚୂନା ହୋଇଯିବ
ସ୍ମିତେ ରହିବ ନେଇ ଅଙ୍କ ।୧୨।

କରେ ଶୋଭେ ଧନୁ ମୁଖେ ଶୋଭେ ହାସ
ଜାଳି ଅହର୍ନିଶ ବୀର୍ଯ୍ୟ ଅନଳ,
ଦୃଢ ପେଶୀ ବନ୍ଧେ ସୁବଳିତ ଅଙ୍ଗେ
ଫୁଟି ଉଠେ ହେମ ବିଭା ବିମଳ ।୧୩।

ଭୀମ ଭୋଗୀ-ଭୋଗ ସମ ଭୁଜ ଯୁଗ
କେୟୂର କଙ୍କଣେ ରୁଚିରତର
ଉରସ୍ଥଳେ ଲମ୍ବେ ସ୍ଥୂଳ ଚନ୍ଦ୍ରହାର
ପ୍ରକାଶି ଝଲକେ କାନ୍ତି ଭାସ୍ୱର ।୧୪।

ବୃକ୍ଷ ମୂଳେ ବନ୍ଧା ସଜ୍ଜିତ ତୁରଗ
ନବ ନୀଳ କାନ୍ତ ରୁଚୀ ରୁଚିର,
ଶୁଭ୍ର ମେଘ ପ୍ରାଏ ଶୋଭେ ଯା ତା ଦେହେ
ଫେନ ପୁଞ୍ଜ ସେ କି ସିନ୍ଧୁ ଶରୀର ।୧୫।

ବସିଲେଣି ଏ ଯେ ଉଚ୍ଚ ଶିଳାସନେ
ନିର୍ଝରିଣୀ ତୀର ପ୍ରବାହ ତଟେ,
ଦେଖୁଛନ୍ତି ଘୋର ଅବିଶ୍ରାନ୍ତ ଗତ
ଖଣ୍ଡା ପାଠ ଶୈଳ- ହୃଦୟ ପଟେ ।୧୬।

କୁଞ୍ଚିତ ଲଲାଟେ ଫୁଟି ଉଠୁଅଛି
ଭାବନା ସିନ୍ଧୁର ଲହରୀ ମାଳା।
ସହସା ଅସିଲ ଅଶ୍ୱ ପୃଷ୍ଠେ ଏ କେ ?
ବିସ୍ମିତ ବଦନା ବୀରେନ୍ଦ୍ର ବାଳା ! ।୧୭।

ଝଳିଛି ପ୍ରକୃତ, ବଦନ ସରୋଜ
ଝାଙ୍କିଲା ପିବାର * ସରମ ଭରେ
ସ୍ବେଦ ବିନ୍ଦୁ, ଛଳେ ସୁରଧୁନୀ ନୀର
ସିଞ୍ଚୁ ଦେଉଛନ୍ତି କି ସ୍ନେହ ଆଦରେ ।୧୮।
ଢେଢ଼େ ଢଳ ଢଳ ଶ୍ରୀଅଙ୍ଗ କମଳ
ଯୌବନ ଲାବଣ୍ୟ ରହୁଛି ପୂରି
ନିର୍ଝରିଣି ! ତୋର ଅରଣ୍ୟାନୀ ଅଙ୍ଗେ
ଖେଳେ ଅଳି ଯଥା ମଧୁ ମାଧୁରୀ ।୧୯।
ତୃଣ ଝଟୀ ତଟେ ଲମ୍ବିତ ଜଟାର,
ସର୍ବୋତରେ ଶୂଳ ତ୍ରିଫଣୀଧର,
ସର୍ବୋ ଭଟେ ବଳ୍‌ଗା, ରକ୍ତ ତାଟକିତ
ବିବିଧ ଭୂଷଣେ ତନୁ ସୁନ୍ଦର ।୨୦।
ଭୀମ ପ୍ରହରଣେ କେ ଭୀମା ରମଣୀ
ବୁଲୁଅଛୁ ବନ- ସ୍ଥବଣୀ ବେଶେ,
ଦଳି ଦୈତ୍ୟକୁଳ ଭ୍ରମେ କି ଭବାନୀ
ଭବ ଅନ୍ବେଷଣେ ଅରଣ୍ୟ ଦେଶେ ?
ବିସ୍ମୟର ରେଖା ସହସା ଲଭିଲୁ,
ଝଲକିଲା ସ୍ମିତ ବାଳା ବଦନେ
କହିଲା ମଧୁରେ— "ଏକ ଅର୍ଦ୍ଧପୁଷ !
କି କହିବ ତନୟ ଶିଳା ଆସନେ ।୨୧।
ସନ୍ଧ୍ୟାପାଠ ତେଜି ଅଛି ଦୂରଦେଶେ
ଦେଖି ପ୍ରକୃତର ମୋହନ ଛବି
ବନବାସୀ ହୋଇ ସନ୍ନ୍ୟାସ ଜୀବନେ
ବଳାନ୍ତି କି ଶଙ୍କି ହେବାକୁ କବି" ।୨୩।

---

* ଶ୍ରମଭରେ ।

ଅଶ୍ୱ ପୃଷ୍ଠୁ ଓହ୍ଲ ସଧୀରେ ଲଳନା
ଫେର ନୀରେ କର ବଦନ ଧୋଇ
ସ୍ୱବାଙ୍କ 'ସନ୍ନିଧେ' ବସିଲ ଅଗ୍ରହେ
ସ୍ୱଶାନ୍ତ ଶରୀରେ ସୁଶାନ୍ତ ହୋଇ ।୨୪।

ଭାଷିଲେ ବୀରେନ୍ଦ୍ର— କି କହୁଲ ପ୍ରିୟେ !
ସେ ହେଲେ କି ଥିଲ ଆକ୍ଷେପ ମୋର
କ୍ଷତ୍ରିୟ ଶୋଣିତେ ଦୁର୍ଦ୍ଦମ ଜିଗୀଷା
ଦଏ ସିନା ଏବେ ବେଦନା ଘୋର ।୨୫।

ସେ କୁଳ କେତନ ହୋଇଥିଲ ଦିନେ
ଦକ୍ଷିଣା ବଧୂର ସୀମନ୍ତ ଭୂଷା,
ଯା ଉଚ୍ଚେ ନନ୍ଦାଧେ ବୈକୁଣ୍ଠା ସର
ହେଉଥିଲ ଅବ— କମଳା କୃଶା ।୨୬।

ତାପ୍ତି କୂଳ ଠାରୁ ୧ ଗୋମନ୍ତ୍ର ଯାଏ
କମ୍ପି ଉଠୁଥିଲ ଅସୀ ଝଂମଢେ,
ବୈରୀ ହୃଦ ରକ୍ତ ଶୁଷି ଯାଉଥିଲ
କାଦମ୍ବ ଗଣଙ୍କ ରଣ ଝମଢେ ।୨୭।

ନୀପ କୁଳ ରବି + ଷିନେନ୍ଦ କଦମ୍ବ
ବୀର କୁଳ ମୌଳୀ ମଣ୍ଡନ ଶୂର
ଜୟ ବୈଜୟନ୍ତୀ ଉଡ଼ାଇ ସ୍ଥାପିଲେ
ବାନବାସୀ ବକ୍ଷେ ୨ 'ଜୟନ୍ତୀ ପୁର' ।୨୮।

---

୧ ଆଧୁନିକ 'ଗୋଆ' । + ପ୍ରଥମ 'ଷିନେନ୍ଦକଦମ୍ବ' ।
୨-ଜୟାବୁରମ୍ ।

ଜଳ ନ ଥିଲାତ ଦାକ୍ଷିଣାତ୍ୟ ବକ୍ଷେ
ଅଜ୍ୟ ପୂତ ଅର୍ଘ୍ୟ- ଯଜ୍ଞ ଅନଳ
ମୂର୍ତ୍ତିମନ୍ତ ହୋଇ ଅନାସ୍ଥର ଉର୍ଦ୍ଧ୍ୱ
ବାଢୁଥିଲା, ବନ୍ଧୁ ଶକ୍ତି ପ୍ରବଳ ।୨୯।

ଯୁଗ ଯୁଗାନ୍ତର ସୁଦୂର ଅତୀତ
ସେ ଦେଶ ମାନବ କରୁଣା ବନ୍ଧୁ
ଅର୍ଘ୍ୟ ସଦାସ୍ଥିର ପ୍ରସ୍ଥିର ମାନସେ
ଢାଳିଥିଲେ ସେବେ ଅଗସ୍ତ୍ୟ ଉର୍ଦ୍ଧ୍ୱଁ ।୩୦।

ଦ୍ୱାଦଶ ବରଷ ଅନାବୃଷ୍ଟି ଯୋଗେ
ଜାଳିଲା ପ୍ରଚଣ୍ଡ ଯେଉଁ ଅନଳ
ଶୁଖିଗଲା ସିନ୍ଧୁ, ଦୁର୍ଭିକ୍ଷ ପୀଡ଼ନେ
ହେଲେ ପ୍ରାଣୀକୁଳ ପ୍ରାଣେ ବିକଳ ।୩୧।

୧ ଜନ-ପଦ ଶୂନ୍ୟ ଜନପଦ ହେଲା
ଶ୍ୱାନ ଶୃଗାଳଙ୍କ ତାଣ୍ଡବ ଶାଳା,
ଦକ୍ଷିଣ ଭୂଖଣ୍ଡେ ବହିଲା ଅବନୀ
ସେ କାଳରେ କୋଟି କଙ୍କାଳମାଳା ।୩୨।

ମୂର୍ତ୍ତିମତୀ ଦୟା ଦେବୀ ଅନସୂୟା
ତାପ୍ତ କୁଲ୍ୟା ରବି ଅତି ଯତନେ
ଦୁର୍ଭିକ୍ଷର ବାଧା ଘୁଞ୍ଚାଇ ସାଧ୍ୱୀ
ଶୋଭିଲେ ବିମଳ କୀର୍ତ୍ତି ରତନେ ।୩୩।

ଯୁଗ ଯୁଗ ହେବ ସେ ଜାତ୍ର ଏ ଅର୍ଘ୍ୟ
କଲେ କେତେ ଯତ୍ନ ଯାଇ ସେ ଦେଶେ,

୧ଚେଦେବନ୍ତେ ଦ୍ରାବଡେ ଅନାର୍ଯ୍ୟରେ ମାତ
ବଢ଼ିଲେ ଦୁରନ୍ତ ଦାନବ ବେଶେ ।୩୪।
ବହୁକାଳେ ପୁଣି ସେ ଶ୍ୱେତ ପ୍ରାବଲ୍ୟ
ଅଧିବେ ଚାଲନ୍ତି ଦକ୍ଷିଣା ପଥେ,
ସତ୍ୟ ସିଦ୍ଧ କର୍ମ ସେ ୨ ମୟୂର ବର୍ମା
ଆସ୍ଥ କଲ୍ୟାଣ ସ୍ୱମନୋରଥେ । ୩୫ ।

ବୁଝାଇବା ଲାଗି ଅନାର୍ଯ୍ୟର ଗୋଷ୍ଠି
ବଞ୍ଚାଇବା ଲାଗି ମାନବ ଧର୍ମ,
ଆର୍ଯ୍ୟବର୍ତ୍ତ ବନ୍ଧୁ କମନ୍ତି ଆଣିଲେ
ବ୍ରହ୍ମ ନିଷ୍ଠ ବନ୍ଧୁ ଋଷି ସତ୍ତମ ।୩୬।

ପଶ୍ଚିମ ଘାଟରେ ଋଷିଙ୍କ ବସତି
ସ୍ଥାପିଲେ ପ୍ରଥମେ ସେ ବୀରମଣି
ଆର୍ଯ୍ୟନୀତ ଆର୍ଯ୍ୟ ଧର୍ମ ଚଳୁଥିଲେ
ସେହୁ ଋଷିକୁଳ ହୋଇ ଅଗ୍ରଣୀ ।୩୭।

ବାନବାସୀ ବକ୍ଷେ ଯେଉଁ ରକ୍ତଧ୍ୱଜା
ଉଡ଼ୁଥିଲା ସିନ୍ଧୁ ସମୀରେ ଦୋଳି,

---

୧ । ଭାରତୀୟ ସଂସ୍କାରର ଐତିହାସିକ ଚିହ୍ନ । ଅଧମ ଯୁଗରେ ନର ମାଂସ ବର୍ଜନ ସଂସ୍କାରର ପରିଣତ ବହୁକାଳ ବ୍ୟାପୀ ସୁସ୍ମୂର ସୃଷ୍ଟି । ଏ ଯୁଗରେ ମଧ୍ୟ ହରିଜନ ସଂସ୍କାର ଏକ ଚର୍ଚ୍ଚିର ନିଦର୍ଶନ ।

୨। କଦମ୍ବ କୁଳରହୁ ଚନ୍ଦ୍ର ବର୍ମାଙ୍କ ପୁତ୍ର ପ୍ରଥମ ମୟୂର ବର୍ମା କଦମ୍ବ କୁଳର ସୁପ୍ରତିଷ୍ଠିତ କ୍ଷମତାଶାଳୀ ରାଜା ଥିଲେ । ତାଙ୍କର ସ୍ମରଣ ସ୍ଥିତି, କାଦମ୍ବମାନେ 'କୁଳ ମନ୍ତ୍ର' ରୂପେ ମୟୂର ଚିହ୍ନ ଅଦ୍ୟାପି ବ୍ୟବହାର କରୁଅଛନ୍ତି ।

ବନ୍ଦିବି ବୃଟେଳ — ଭାଲେ ସେ କେତନ
ଏକଦମେ ଚାଦମ୍ବ — ଧଇଲେ ତୋଳ ।୩୮।

୧ କୋଳାହଳ ପୁରେ — ମହା କୋଳାହଳ
ଉଠିଲା କାଦମ୍ବ — ବୈରୀ ସଦନେ
କାଦମ୍ବ ବଜମ — ଗୌରବ ଭୁବନେ
ରହିଛି ଉଠିଲା — ଜନ ବଦନେ ।୩୯।

ଚଣ୍ଡାଳ ରାଜର — କରେ କବଳିତ
ହେଲା ଯେବେ ତୀର୍ଥ — ଗୋକର୍ଣ୍ଣେଶ୍ୱର,
ସ୍ୱକର୍ଣ୍ଣେ ଶୁଣିଲେ — ୨ ସିନେସ କଦମ୍ବ
ପ୍ରଭାକାରେ ହେଲେ — କ୍ରୋଧ ଜର୍ଜ୍ଜର ।୪୦।

"ନିଜ ଇଷ୍ଟଦେବ — ଶିବଙ୍କ ଦେଉଳ
ଚଣ୍ଡାଳର କରେ — ଅଜି ଲୁଣ୍ଠିତ !
ଅମ୍ଭ ପୁଣ୍ୟାମୃତ — ଲଭିଯିବ କରେ
ଚଣ୍ଡାଳ ଚରଣେ — ହୋଇ ଦଳିତ ।। ୪୧ ।

"ଶୁଣୁଛୁ ଶ୍ରବଣ — ଅଜି ଏକ ଧ୍ୱନୀ !
'ବମ୍' 'ବମ୍' ବ୍ୟାପି — ଏ ବ୍ୟୋମ ସାରା
ଦୁଏ ଅନ୍ଦୋଳିତ ।। — ଶଙ୍କର ମସ୍ତକେ
ଚାହନ୍ତୁ ଚଣ୍ଡାଳ — ରୁଧିର ଧାରା । ୪୨ ।

"ଜାଗରେ ! ବଜମ — ଉଠ ଅସି ଘେନି
ମାଉରେ ! ସେ ଖଡ୍‌ଗ — ବୈରୀ ଦଳନ,
ସାଜରେ ! ବାହିନୀ — ବହ୍ନି ପ୍ରବାହିନୀ
ଅଙ୍ଗରେ ଦହନ୍ତି — ବୈରୀ କାନନ । ୪୩ ।

---

୧-୨ୟ ସିନେସ କଦମ୍ବ-ଏ ୧ମ ମୟୂର ବର୍ମାଙ୍କର ପୁତ୍ର ।
୨-ଚନ୍ଦ୍ରବଂଶୀୟ ଯଯାତିପୁତ୍ର ରାଜା କୋଳାହଳ ଦେବଙ୍କ ସ୍ଥାପିତ ରାଜ୍ୟ । ଅଧୁନାର ନାମ କୋଲ୍ହାପୁର ।

"ମହାରୁଦ୍ର ଅଙ୍କ     * ହର ବକ୍ଷସ୍ଥଳେ
ମହିଷମର୍ଦ୍ଦନୀ     ଦେବୀ ଚାମୁଣ୍ଡା
ଖଣ୍ଡାଧାରେ ମୋର     ରଚ ମା ତାଣ୍ଡବ
କଟାଅ ଚଣ୍ଡାଳ     ମସ୍ତକ ଗୁଣ୍ଡା ।୪୪।
"ସାଜରେ ! ସାଜରେ ! ନସହେ ବାଜନ୍ତ
ବାଜରେ ଦୁନ୍ଦୁଭି     ଗମ୍ଭୀର ନାଦେ
ସାଜରେ ! ମୋ ସୈନ୍ୟ ବୈରୀ ଦୁର୍ଗଶିରେ
ନାଶ ବୈରୀ ବକ୍ଷେ     ଦଳିତ ପାଦେ" ।୪୫।
ବଲ୍‌ଗିଲେ ଏମନ     ସେ ବାଦମ୍ବ ମଣି
ଭୁଲିଲେ ବାହୁନୀ     ଗୋ କର୍ଣ୍ଣ-ମୁଖେ
ମହା ହବେ ଇଣି     ଚଣ୍ଡାଳ ରାଜନେ
ଜୟ ଶ୍ରୀ ସମ୍ପଦେ     ପେରଲେ ସୁଖେ ।୪୬।
ନବେଶିଲେ ତହିଁ     ସଦାଶିବ ନାସ୍ତୁ
ଶୋଭୀୟ ବପୁଙ୍କୁ     ଧାମକ ବର
ଶୋଭୁଛି ଅଦ୍ୟାପି     ସନ୍ତୁଷ୍ଟ ଫଣୀ
ପ୍ରାଏ ତୀର୍ଥ ଶ୍ରେଷ୍ଠ     ଗୋକର୍ଣ୍ଣେଶ୍ୱର ।୪୭।
ଚଣ୍ଡାଳ ହସ୍ତରୁ     ଗୋକର୍ଣ୍ଣେଶ ତୀର୍ଥ
ଉଦ୍ଧରିଲେ ଯେହୁ     ମହା ଗୌରବେ
ତାଙ୍କର ଦାୟାଦ     ମୁହିଁ ଅଜ ପ୍ରିୟେ !
ବନବାସ ଦୁଃଖ     ସହେ ନୀରବେ ।୪୮।
ରଣେ ଦୁଇ ବାର     ପଲ୍ଲବ ସେନାଙ୍କୁ
ବଳମ ଅନଳେ     ପଲ୍ଲବ ସବ

---

* ଅସ୍ତ ଅବଶିଷ୍ଟ ନୃପ । ଶୁଭ ଭାର୍ଯ୍ୟାଙ୍କ ସମ୍ମୁଖେ ପଦାଙ୍କିତ ସମୁଦ୍ରଣରୁ ସମ୍ବଲପୁର ଅଞ୍ଚଳରେ ଏହା ନମନ୍ତ୍ରଣ ବୁଝାଏ ।

ଢାଲ ଦେଇଥିଲେ ସମର ପ୍ରାଙ୍ଗଣେ
୧ ଯେଣ ମୃଗେଶ ବର୍ମା ବୀର କେଶରୀ ।୪୯।
ତାଙ୍କର ତନୟ ବୀର ରବି ବର୍ମା
ରବି ସମ ଶତ୍ରୁ ତାପନ ଯେତକେ
ପଲ୍ଲବ ଦାୟାଦ ନୃପ ବିଷ୍ଣୁ ଗୋପେ
ଶୁଆଇଲେ ତପ୍ତ ସିକତା ଶେଯେ ।।୫୦ ।
କାଦମ୍ବ ଅଗ୍ରଣୀ ପଲ୍ଲବ ରାଜଙ୍କ
ସିଂହତଳ ବପୁ ସୌନ୍ଦର୍ଯ୍ୟ ତୋଳ
ନିବେଶିଲେ ପୁଣି ପଲ୍ଲବ ଆସନେ
ନିଜ ସ୍ନେହେ ଶ୍ରଦ୍ଧା ଚନ୍ଦନ ବୋଲ ।୫୧।
ପ୍ରଚଣ୍ଡ ବିକ୍ରମେ ଚଳାଇ ବାହିନୀ
କାଞ୍ଚୀ ଅଭିମୁଖେ କଲେ ସଞ୍ଚାର,
ନୃପ ଚଣ୍ଡ ଦଣ୍ଡ ଚଣ୍ଡ ଦର୍ପ ଦଳି
୨ ଶାଳଙ୍କୁଳ ପୀଠ କଲେ ଉଦ୍ଧାର ।୫୨।
କେତେ ଧନ ତହୁଁ କାଦମ୍ବ କେତନ
ଉଡ଼ିଲ ଏକାମ୍ର ୩ ସିନ୍ଧୁ ସମୀରେ

---

୧ । କାଦମ୍ବ ମୃଗେଶ ବର୍ମା ବେଲଗାମ ଅଞ୍ଚଳରେ ରାଜତ୍ୱ କରୁଥିଲେ । ତାଙ୍କର ପିତାମହ କାକୁସ୍ଥ ବର୍ମା ଅଟନ୍ତି ।

୨ । କଦମ୍ବମାନଙ୍କର କୁଳ ଦେବତା ଶିବଙ୍କର ପୀଠସ୍ଥଳୀ ଭୂମିକା ଦ୍ରଷ୍ଟବ୍ୟ ।

୩ । କାଞ୍ଚିରେ ଗୋଟିଏ ସୁବିଶାଳ ପୁରାତନ ଆମ୍ର ବୃକ୍ଷ ଶିବ-ମନ୍ଦିରରେ ଅଛି; ସେ ଯୋଗୁଁ ଉକ୍ତ ଶିବପୀଠର ନାମ ଏକାମ୍ର । କଥିତ ଅଛି ସେହି ବୃକ୍ଷରୁ ପ୍ରତିଦିନ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଆମ୍ର ଫଳ ପଡୁଥିଲା । ତାହା ଦେବସେବାରେ ଲାଗୁଥିଲା । ଆଜି କାଳ ପରିବର୍ତ୍ତନରେ ସେ ଅଲୌକିକତା ଲୁପ୍ତ ହୋଇଅଛି ।

ଅଳ୍ପ କାଳେ ପୁଣି ହିଡ଼ ଉଡ଼ିଗଲା
ପଡ଼ିଲା ୧ ପ୍ରତୀଚୀ ଅମ୍ବୁଧି ତୀରେ ।୫୩।
ଯେଉଁ ଚନ୍ଦ୍ରବଂଶ ପ୍ରଖ୍ୟାତ ଭାରତେ
ପ୍ରସାର କୀରତ— ଚନ୍ଦ୍ରିକା ରାଶି,
ସେହି କୁଳେ ଜନ୍ମି ୨ ନୀପ ନୃପବର
କୁଳ ଉଦ୍‌ଭାସି ।୫୪।
ଥିଲେ ସ୍ୱଗୌରବେ
ଥିଲେ * ଶତପୂର୍ବ ନୀପ ନୃପଙ୍କର
ରଣେ ଅପ୍ରତିମ ଅତୁଳ ବଳେ
ପୁଞ୍ଜୀଭୂତ ହୋଇ କ୍ଷାତ୍ରଧର୍ମ କିବା
ଅବତୀର୍ଣ୍ଣ ଥିଲା ଅବନୀ ତଳେ ।୫୫।
ନୀପରାଜ ଖ୍ୟାତ ଥିଲା ତାହାଙ୍କର
ସେ ମଧ୍ୟେ*'ସମର' ବୀରେନ୍ଦ୍ର ମଣି,
ସମର-ପ୍ରାଙ୍ଗଣେ ଖେଳନ୍ତି ଭ୍ରୂଭଙ୍ଗେ
ବିଳାସ-ବିପିନ ପ୍ରାଏ ଯେ ମଣି ।୫୬।
ସେ ସମର ବର୍ମା *କାମ୍ପିଲ୍ଲ ନଗରେ
ତୋଳିଥିଲେ ଧନେ ଗୌରବ ଛତ୍ର,
ସେହି ନୀପକୁଳ— ଭୂଷଣ 'ମୟୂର'
ବାନବାସୀ ଦୁର୍ଗେ ହେଲେ ଭୂପତି ।୫୭।
୩ ପିତୃ ଗୋତ୍ର ସ୍ମୃତ ରକ୍ଷା ଲକ୍ଷ୍ୟ ବହି
ସ୍ଥାପିଲେ ସ୍ୱୟମ୍ଭୂ ମଧୁକେଶ୍ୱର

---

୧ ଦାକ୍ଷିଣାତ୍ୟର ପଶ୍ଚିମ ସମୁଦ୍ର କୂଳରେ ଗୋମନ୍ତ [ଗୋଆ] କାଦମ୍ବ ରାଜଧାନୀ । ଏହା ବହୁକାଳ ଯାଏ କଦମ୍ବ ମାନଙ୍କ ଅଧିକାରରେ ରହି ପାରିଥିଲା ।

୨ ମୂଳ କୁନ୍ଦବଂଶ ଅନୁସନ୍ଧେୟ ।

୩ ୧ମ ମୟୂର ବର୍ମାଙ୍କ ବଂଶ ପ୍ରପିତାମହଙ୍କ ନାମ ମଧୁକେଶ୍ୱର ।

*ଗାତ ଶୁକ୍ଳଗାତ ନାମ ଅନୁସର
ବର୍ଣ୍ଣିଲେ ଉପାଧି ନୀପକୁଳର ।୫୮।
କାହିଁ ୧ଗୋପରାଷ୍ଟ୍ର କାହିଁ ସେ ହାଙ୍ଗଲ ୨
କାହିଁ ୩ଶୈଳହାର ୪ଜୟନ୍ତୀ ପୁର
କାହିଁ ୫ଖେଟହାର କାହିଁ ସେ ୬ ତୁଲୁବ
କାଦମ୍ବର ଭାଗ୍ୟ ହୋଇଛି ଦୂର ।୫୯।
ପଲ୍ଲବୀ କୁଳର ସମର କୌଟିଲ୍ୟ
ଅମାତ୍ୟ କୁଳର ଲବ୍ଧ ବଞ୍ଚନା,
ଲୁପ୍ତ କରାଇଛି କାଦମ୍ବ ଗୌରବ
ଦେଇଛି ସିନା ଏ ତୀବ୍ର ଶୋଚନା ।୬୦।
ଅତୀତ ଗୌରବ ଅତୀତେ ଲିଭିଛି
ଭବିଷ୍ୟତ ଯେବେ ଧରେ ଅନ୍ଧାର
କିପାଇଁ ବହିବ କରେ ଏ କୃପାଣ
କିପାଁ ରଖିବ ଏ ଜୀବନ ସ୍ଥିର ।୬୧।

---

* ୧ମ ମୟୂର ବର୍ମାଙ୍କ ପିତା ଚନ୍ଦ୍ରବର୍ମା, ଚନ୍ଦ୍ରବର୍ମାଙ୍କ ଭ୍ରାତା ପୁରନ୍ଦର ବା ଇନ୍ଦ୍ରବର୍ମା । ଉଭୟ ଭ୍ରାତାଙ୍କ ସ୍ୱର୍ଗ ପରେ ମୟୂର ବର୍ମା ବନ୍ଧୁସୀପୁରରୁ ଆସି ବାନବାସୀରେ ପିତୃ-ସିଂହାସନରେ ଆରୂଢ଼ ହେଲେ । ତାଙ୍କ ମୃତ୍ୟୁ ସମୟରେ ସେ ବନ୍ଧୁସୀପୁରରେ ଥିଲେ । ଚନ୍ଦ୍ରବର୍ମ ଦେବ ଓ ଇନ୍ଦ୍ରବର୍ମ ଦେବ ଏହି କୁଳର କୌଳିକ ଉପାଧି ।

୧-ଆଧୁନିକ ଗୋଆ ।୨-ହାଙ୍ଗାଲ୍—ଆଧୁନିକ ନାମ । ଏହା ପୂର୍ବେ ହାନୁମ୍ ଗାଲ୍ ନାମରେ କଥିତ ହେଉଥିଲା । ୩-ଶୈଳହାର-ଗୋଆର ଅଳ୍ପ ଦୂରରେ ଅବସ୍ଥିତ । ୪-ଆଧୁନିକ କନ୍ନାବୁରମ୍ । ୫-ରତ୍ନପୁର-ଜିଲ୍ଲାନ୍ତର୍ଗତ ଖେଡ ନାମକ ତାଲୁକର ପ୍ରାଚୀନ ନାମ ଖେଟହାର । ୬-କାନାଡ଼ାର ଉତ୍ତରାଂଶ ତୁଳୁବ ପ୍ରଦେଶର ଅନ୍ତର୍ଗତ ଥିଲା ।

ବାନବାସୀ ତେଜି	ବନବାସୀ ହେଲି
କର ଅଙ୍କ ତୋଳେ	ବନବାସିନୀ,
କପଟ ଯାପିବ	ନିଶ୍ଚିନ୍ତେ ଜୀବନ
କହ ପ୍ରିୟେ ଚନ୍ଦ୍ର—	ସ୍ମିତହାସିନୀ ।୨୨।
କାଦମ୍ବ-କୁମାର	ଅବଜ୍ଞାତ ହୋଇ
ରହିବ ଅଗତ	ଚରଣ ତଳେ ?
ଅସମ୍ଭବ ପ୍ରିୟେ	କୁଳ ମାନ ଧନ
ଫିଙ୍ଗି ନ ପାରିବ	ଅଖ୍ୟାତ-ଗଳେ ।୨୩।
ଏହି ଗିରିଦୁର୍ଗେ	ସ୍ଥାପିବି ନଗର
ଏହି ବନ୍ୟଜାତ	ସହାୟ ମୋର
ନବସୈନ୍ୟ ତୋଳି	କାଦମ୍ବ କେତନ
ଉଡ଼ାଇବି ମହୁଁ	ବେଦନା ଘୋର ।୨୪।
ସୁଜଳା ସୁଫଳା	ଏହି ବନଭୂମି
ନିସର୍ଗ-କମଳା—	ବିଳାସ ସ୍ଥଳୀ
ଗହଳ ଶ୍ୟାମଳ	ପଲ୍ଲବ, କୁସୁମେ
ବିସଙ୍କୁଳ ଦେଖ	ଦ୍ରୁମ ଅବଳି ।୨୫।
ଜାହ୍ନବୀ ଯମୁନା	ରୂପ ପରିଗ୍ରହି
ସରିଦ୍ୱର * 'ଶଙ୍ଖ'	'କୋଇଲି' ବେନି
ବ୍ରହ୍ମର୍ଷି † ବ୍ୟାସଙ୍କ	ଚରଣ ପଖାଳି
ଅନ୍ୟୋନ୍ୟ ମିଳନେ	ଧରନ୍ତି ବେନି,

---

* 'ଶଙ୍ଖ' ଓ 'କୋଏଲ' ଦୁଇଟି ନଦୀ । 'ବେଦବ୍ୟାସ' ନାମକ ସ୍ଥାନରେ ମିଳିତ ହୋଇ 'ବ୍ରାହ୍ମଣୀ' ନାମ ଧାରଣ କରିଅଛି ।

† ବେଦ ବ୍ୟାସ ଏଠାରେ ଆଶ୍ରମ କରିଥିଲେ, କି ନାହିଁ; ମାତ୍ର ସ୍ଥାନର ନାମ ବେଦବ୍ୟାସ । ଏଠାରେ ଶିବମନ୍ଦିର ଗୋଟିଏ ଅଛି । ସରସ୍ୱତୀ କୁଣ୍ଡ ନାମରେ ଗୋଟିଏ କ୍ଷୁଦ୍ର କୁଣ୍ଡ ଅଛି । ଏଠାରେ ପ୍ରତିବର୍ଷ ଫାଲ୍ଗୁନ ମାସରେ ଶିବରାତ୍ରି ଉତ୍ସବରେ

ଶଙ୍ଖନାଦେ କଳ—　　କୂଜନ ମିଶାଇ
ଗାଇ ହର୍ଷଗୀତ　　ପ୍ରାବୃଟେ ସୁଖେ
ବହୁ ଅସୁଥିଲ　　'ବ୍ରାହ୍ମୀ' ନାମ ବହି
ଜଳଧି ଗମନେ　　ପୂରୁବ ମୁଖେ;
ଅବଲୋକି ଏଥି　　ଭବ ଅବର୍ତ୍ତିବ
ଭକ୍ତିଭରେ ତାଙ୍କ　　ଚରଣ ଧୋଇ
ବହିଣ୍ଟ ଉତ୍ତରେ　　ପ୍ରଦକ୍ଷିଣ କରି
ଗମୁଛି ଦକ୍ଷିଣ　　ବାହିନୀ ହୋଇ । ୬୮ ।
ମହା ବେଗବତୀ　　ସୁର ସ୍ରୋତସ୍ୱତୀ
ବହ୍ମାଣ୍ଡକୁଁ ଯେବେ　　ଆସିଲ ଝରି
ଦେଖି ସେ ପ୍ରବାହ,　　ସୁରନରବୃନ୍ଦ
ସଙ୍ଗେ ଚୌଦିଗରୁ　　ଉଠିଲେ ଥରି,
ଶଙ୍କା ହେଲ ମନେ　　ପ୍ରବାହ ପତନେ
ଫାଟିଯିବ ଅବା　　ଧରଣୀ ବକ୍ଷ ?
ଧବଳୁଁତ ସିନା　　ହୋଇଥିଲ ତବେ
ସେ ବେଗ ରୋଧନେ　　କେବଳ ଦକ୍ଷ । ୬୦ ।
ଧୂର୍ଜଟି ଜଟାରେ　　ପଶି ସୁରଧୁନୀ
ନ ପାଇଲ ପଥ　　ଅବତରଣେ ।
ବସ୍ତେ ଅବା ବ୍ରାହ୍ମୀ　　ବାଟ ଭାଙ୍ଗିଯାଏ
ସେ ପୁରାଣ ସ୍ମୃତ　　ଅନୁସ୍ମରଣେ ? ୭୧ ।
ଏହି ତଟିନୀର　　ନୀରସୁଧା ପାନେ
ଅହ୍ଲାଦିତ ହେବ　　ପ୍ରକୃତ ପୁଞ୍ଜ,

ଘୋଡ଼ାଏ ମେଳା ବସେ । ବଦରିକାଶ୍ରମ ହିମାଳୟବାସୀ ବ୍ୟାସ ନହେଲେହେଁ, ବ୍ୟାସ ଉପାଧିଧାରୀ କୌଣସି ସାଧୁ ସନ୍ନ୍ୟାସୀ ଏଠାରେ ଦେଖି ବା ଆଶ୍ରମ କରିଥାଇ ପାରନ୍ତି ।

ଶୀତର ପରଶେ          ସୁଷମା-ସମ୍ପଦେ
ଶୋଭବ ନଗରୀ          ଉଦ୍ୟାନ-କୁଞ୍ଜ । ୨୨ ।

ନଦୀମାତୃକଏ          ଧରାଖଣ୍ଡ ପ୍ରିୟେ !
ରଞ୍ଜିତ ହିନ୍ଦୋଳି—          ହିନ୍ଦୋଳ ଦେଉଛେ
ନାଚୁଛେ କମଳା          ବାଳସୂର୍ଯ୍ୟ ଏଥି
ସୁକୋମଳ ଶ୍ୟାମ          ଶଷ୍ପଲ ଶେଯେ । ୨୩ ।

ବାଜୁଛି ମୋ କର୍ଣ୍ଣେ          କି ଅଭୟ ବାଣୀ
ଦାରୁଚନ୍ଦ୍ର ପ୍ରଭୁ          ଭକ୍ତବତ୍ସଳ,
ଅଭୟ ବରଦ          ପଞ୍ଚାସ୍ୟେ ତାଙ୍କର
ଫୁଟି ଉଠୁଅଛି          ହାସ୍ୟ-କମଳ । ୨୪ ।

ସେ ବିମଳ ହାସେ          ହସୁଛି ଚନ୍ଦ୍ରମା
ଢାଳି ଭାଲପଟୁଁ          ଜ୍ୟୋତ୍ସ୍ନା-ଅମୃତ,
ଅଶିଷ ପରାଏ          ପଡ଼ୁଛି ମୋ ଶିରେ
ମହା ବ୍ୟୋମକେଣ୍ଡୁଁ          ହୋଇ ନିସୃତ । ୨୫ ।

ଏହୁ ଜ୍ୟୋତ୍ସ୍ନାଲୋକେ          ସ୍ଖଳିବ ଚରଣ
ସ୍ମର କୁଳଦେବ          ସେ ବନ୍ଧୁପଦ
ହେବ ନିବାରିତ          ତାଙ୍କର ହିନ୍ଦୋଳେ
ଭାଗ୍ୟପଥୁଁ ମୋର          ସର୍ବ ବିପଦ । ୨୬ ।

ମହା ବେଗବତୀ          ସ୍ରୋତସ୍ୱତୀ ସିନା
ଏକସ୍ରୋତେ ଯେବେ          କରଇ ଗତି,
ଶତଧା ବିଚ୍ଛିନ୍ନେ          ଲଭେ ତ ଦୁର୍ଗତି
କ୍ଷୁଦ୍ରକର ଛଟେ          ପୂର୍ଣ୍ଣ ଶକତ । ୨୭ ।

ସେମିତେ ଧନ ଯାଏ          ସୂର୍ଯ୍ୟଚନ୍ଦ୍ର କୁଳ
ଅବିଚ୍ଛିନ୍ନ ଶକ୍ତି          ଅନ୍ତରେ ବନ୍ଧ,

ଦୁର୍ବାର ବଳରେ ଯାଉଥିଲେ କାଳ
ଅନୁକୂଳ ଥିଲା ଭାରତ ମସ୍ତୀ । ୭୮ ।
ବହୁଶାଖେ ବହୁ ନାମ ବହୁ ସେବେ
ବଞ୍ଛିଲା ହେଲା ଏ ବଂଶ-ଲତିକା
ଶୋଣିତ ସମ୍ବନ୍ଧ ଭୁଲି ସବୁ କୁଳ
ଆଦରିଲେ ନୀତ ଆତ୍ମଘାତକା । ୭୯ ।
ଆତ୍ମଦ୍ରୋହେ ମାତି ହରାଇଲେ କ୍ରମେ
କ୍ଷତ୍ରିୟ ବିକ୍ରମ ଗୌରବ ଭାତି,
ସୁଯୋଗେ ବସିଲେ ତାଙ୍କର ଆସନେ
* ଶକହୂନ ଆଦି ଅପର ଜାତି । ୮୦ ।
ଦକ୍ଷିଣ ଭାରତେ ଏକାଳେ ତ୍ରିଷଣେ
ଆତ୍ମଘାତୀ ନୀତି ହେଉ ପ୍ରବଳ,
ଅନ୍ୟୋଽନ୍ୟେ ଜଗାଇ୍ଥ ରାଷ୍ଟ୍ରପତି-କୁଳେ
ଜଳୁଥିଲା ଭୀମ ଅନଳ । ୮୧ ।
ଗଙ୍ଗ, ହୟଶାଳ, ରାଷ୍ଟ୍ରକୂଟ, ନଳ,
ଲାଟ, କାନଚୂର୍ଣ୍ଣ, ମୌର୍ଯ୍ୟ, ମାଳବ,
ଗୁର୍ଜର, କଦମ୍ବ, ସେନ୍ଦ୍ରକ, ଯାଦବ,
ଅଲ୍ପ ଗୁଲ୍ଲକ୍ୟ ଅନ୍ଧ୍ର, ପଲ୍ଲବ,
ଚେର ପାଣ୍ଡ୍ୟ ଆଦି ପ୍ରଧାନ ନୃପେ
ପରସ୍ପର ଦ୍ରୋହେ ମାତି ଜାରତେ
ଅନ୍ୟୋଽନ୍ୟେ ବିଗ୍ରହେ ପ୍ରମତ୍ତ ପ୍ରମଦେ;
କାଢ଼ୁଥିଲେ ପ୍ରକୃତ ତନ୍ଦ୍ର ଅବିରତ । ୮୩ ।
ଗଙ୍ଗାତଟୁଁ ଅଳ୍ପ ଗୋଦାବରୀ ଯାଏ
ଉଠିଥିଲା ଝଡ଼,
ଗାଙ୍ଗେୟ ଗୌରବ

* ଐତିହାସିକ ସମ୍ମତ । (ବଣ୍ଟକୋଷ)

ଜାଗନ୍ତୁ ଦକ୍ଷିଣେ          ତୁଳୁବୀ ଚେତନ
ଚଳେ ବଳେ          ବୈରୀ ବିକ୍ରମ ଦଳି । ୮୪ ।
ଏହି ତୁଳୁବୀର          ସଂଗ୍ରାମ-କୌଶଳେ
ଲୁପ୍ତ କାଦମ୍ବର          ସୌଭାଗ୍ୟ-ରବି,
ଜୟଶ୍ରୀ ଅଙ୍କରେ          ନାଚୁଛି ତ ଏବେ
ଦୁଃଖେ ଲଙ୍ଘିନୀର          ଦାରୁଣ ଛବି । ୮୫ ।
*ତୁଳୁବ ବକ୍ଷରେ          ବଲ୍ଲାଳ ଚେତନ
ଆନ୍ଦୋଳିତ ଅଙ୍ଗ          ସିନ୍ଧୁ ସମୀରେ,
କାଦମ୍ବର ଶତ          ଗଉରବ ସ୍ମୃତି
ତା ଚରଣ ତଳେ          ଲୋଟୁଛନ୍ତି ଧୀରେ । ୮୬ ।



---

* କାନାଡ଼ାର ଉତ୍ତରାଂଶ 'ତୁଳୁବ' ପ୍ରଦେଶର ଅନ୍ତର୍ଗତ ଥିଲା । ଖ୍ରୀ ୧୬୧ରୁ ଖ୍ରୀ ୬୧୪ ପର୍ଯ୍ୟନ୍ତ ଏହା କଦମ୍ବ ରାଜାମାନଙ୍କ ଅଧୀନ ଥିଲା । ପରେ ଖ୍ରୀ ୬୧୪ରୁ ଖ୍ରୀ ୧୩୩୬ ପର୍ଯ୍ୟନ୍ତ ବଲ୍ଲାଳ ବଂଶୀୟ ରାଜାମାନଙ୍କର ରାଜତ୍ୱ ଏଠାରେ ପ୍ରତିଷ୍ଠିତ ରହିଲା ।

# ତୃତୀୟ ସର୍ଗ

ଶୁଣ ଗଣ୍ୟାଧାର ! ନିବେଶି ଶ୍ରବଣ
ଭଦମ୍ବ କୁଳର ବିଷାଦ ଗାଥା,
ଶୁଣିଲେ ସେ ବାଣୀ ଜନ୍ମିବ ତ ତୋର
ନୀରମସ୍ତ ମୃଦୁ ହୃଦୟେ ବ୍ୟଥା । ୧ ।
ଯେଉଁ ଦାନବେନ୍ଦ୍ର ମହାବଳୀ ବଳି
ଦୁର୍ବାର ବଳମେ ଆକମି ସୁରେ,
ବିଜୟ କେତନ ଉଡ଼ାଇ ବସିଲା
ଶକ୍ର ସିଂହାସନେ ଅମର ପୁରେ । ୨ ।
ବାମନ ବିଗ୍ରହେ ଅବତର ହରି
ସ୍ୱତ୍ନସ୍ତ୍ର ବଳମେ ବଳୀକୁ ଛଳି
ହରନେଲେ ତାର ଅଗାଧ ଗରମା
'ସାମ' ଗାନେ ବନ୍ଦୁ ଶକତ ଦଳି । ୩ ।
ସ୍ୱର୍ଗ ବିବର୍ଜିନେ ଚନ୍ଦ୍ରବଂଶୀ ନୃପ
'ସୁତପା' ଔରସେ ସେ ବୀରମଣି,
ଅବତର ପୃଥ୍ୱୀ ଅଟଳ ସଂଯମେ
ଶାସନେ ମଣ୍ଡିଲେ ଭାରତ ଧରଣୀ । ୪ ।
*ଅଙ୍ଗ, ବଙ୍ଗ, ସୁହ୍ମ, କଳିଙ୍ଗ ନାମରେ
ପୁଣ୍ଡ୍ର, ମିଶି ପଞ୍ଚ ବୀର କୁମର.

* ମୂଳ ହରିବଂଶ ଦ୍ରଷ୍ଟବ୍ୟ ।

ବଳିଙ୍କ ମହିଷୀ 'ସୁଦେଷ୍ଣା' ଗର୍ଭରୁ
ଜନ୍ମି ଯଶୋଦେହେ ହେଲେ ଅମର । ୫ ।
ତାଙ୍କ ନାମେ, ତାଙ୍କ ଶାସିତ ଭୂଖଣ୍ଡ
ବିଖ୍ୟାତ ସ୍ମୃତି— ଦର୍ପଣ ସର
ଥିଲେ ସେ ବଳିଙ୍କ ଅନ୍ୟ ପୁତ୍ର 'ବାଣ' *
ଭୀମ ଭୁଜେ ରୁଦ୍ର ଶକତି ଧର । ୬ ।
ଶଙ୍କର ପ୍ରସାଦେ ଥିଲେ ସେ ନିରତେ
ରଣେ ଅପ୍ରତିମ ଅଜେୟ ବୀର,
କୃପାଣ ଫଳକେ ଝଟି ପଡ଼ୁଥିଲା
ପଲକେ ସହସ୍ର ଅରାତି ଶିର । ୭ ।
ସୁଷମା ସମ୍ପଦେ ଭୂତଳେ ଅତୁଳ
ସ୍ଥାପି * 'ବାଣପୁର' ସେ ବୀରମଣି,
ତୋଳଥିଲେ ତହିଁ ଦୀପ୍ତ ରାଜଦଣ୍ଡ
ନାମେ କମ୍ପୁଥିଲା ଯାହେ ଧରଣୀ । ୮ ।
ବିକ୍ରମ ବଳେଙ୍କ ଦେବ ତାରକାରି
୧ ମୟୂରବାହନ ପ୍ରସନ୍ନ ମନେ
ଅନଳ ପ୍ରଭବ ଦୀପ୍ତ ଧ୍ୱଜା ସଙ୍ଗେ
ଦେଇଥିଲେ ସେହି ବୀର ରତନେ । ୯ ।
୨ ଜଗଜାଣି ସେହି ବାଣପୁରେ ଭାଳେ
ବାଣ ସଂପୂଜିତ ଶଙ୍କରେ ଭଜି,
ନୀପକୁଳରତ୍ନ ୩ ହିନେସ କଦମ୍ବ
ଦୁର୍ଜ୍ଜୟ ଗରିମା ଥିଲେ ଅରକ୍ଷ । ୧୦ ।

---

୧ । ମୂଳ ହରିବଂଶ ଦ୍ରଷ୍ଟବ୍ୟ ।
୨ । ସମ୍ଭବତଃ 'ଭାମ୍ବୀ' ଅଧୁନାତ ଭାଣ୍ଡେଶ୍ୱରମ୍' ।
୩ । ପ୍ରଥମ ହିନେକ କଦମ୍ବ ।

ନିର୍ଷ୍ଠ କନ୍ଦାରେ        ଏହୁ ଶୈଳସ୍ତମ୍ଭେ
ଜଳି ଉଠି ସେଦିନ        ଦାବ ଅନଳ,
ଭସ୍ମ ଅବଶେଷ        ରଖିଯାଏ ଦଗ୍ଧ
ତୃଣ ପର୍ଣ୍ଣତରୁ        ଲତା ସକଳ । ୧୧ ।

ସେ ବୀରେନ୍ଦ୍ରଙ୍କର        ଶ୍ରେଷ୍ଠ-ହୃତାଶନ
ସେଦିନ ଅବକୁଳ        ବିଜନ ଜାଲି
ଅବବାମା ଭାଲ୍ଁ        ସିନ୍ଦୂର ଲିଭାଇ
ବୋଲ ଦେଉଥିଲା        ସେ ଭୂତକାଳି । ୧୨ ।

ପ୍ରଭଞ୍ଜନ ସବୁ        ବାହୁନି ସଞ୍ଜାରେ
ସିଦ୍ଧି ଲଭିଥିଲେ        ବୀର-ରତନ
ଦାବାନଳ ଶିଖା        ସମ ଲହ ଲହ
ନାଚୁଥିଲା ତାଙ୍କ        ରକ୍ତ କେତନ । ୧୩ ।

ଧୂଳି ଧୂମେ, ସେଦିନ        ହୁଏ ଧୂସରିତ
ଏ କାଳେ ତୋ ସୌଧ        ଶିଖରମାଳା,
ହେଉଥିଲା ତାଙ୍କ        ବାହୁନି ସଞ୍ଜାରେ
ଧୂଳି ଧୂସରିତା        ଅବାରି ବାଳା । ୧୪ ।

କାଳି ତମ ଧୂମେ,        ଉଦ୍‌ଭ୍ରାନ୍ତ ଗମନେ
କେତେ ପ୍ରାଣୀ ଏଥି        ଶମନ ମୁଖେ,
ପଡ଼ନ୍ତି ବ୍ୟାକୁଳେ,        ପ୍ରଶସ୍ତ ବକ୍ଷେରେ
କେତେ ପ୍ରାଣୀ ପୁଣି        ଝୁରନ୍ତି ଦୁଃଖେ । ୧୫ ।

ତାଙ୍କ ରୋଷାନଳ—        ସଂଘାତ ନିବିଡ଼
ଦୁଃଖ-ତମ ଘୋର        ଅଗତି ଦେଶେ,
କୁରଙ୍ଗ କପୋତ        ପ୍ରାଏ ଅବ-ନାରୀ
ଝୁରି ଗଡ଼ୁଥାନ୍ତି        ବିଶ୍ଳଥ ବେଶେ । ୧୬ ।

¹ନରସିଂହ ବଂଶୀ ସେଣ, ଶୋଭୁଥିଲ
² ମୁଦ୍ରା ପରେ ତାଙ୍କ କେଶରୀ ଛବ
ଅତୀତ ଗରବେ ଭୂଷ ଯାଉଛନ୍ତିରେ
ସେ କଦମ୍ବକୂଳ— ଗୌରବ-ରବ । ୧୭ ।
ଗୃହକା ବଇରୀ ³ ଦ୍ୱିତୀୟ ମୟୂର
ଲୁପ୍ତ ଗଉରବ କର ଉଦ୍ଧାର,
ତୃତୀୟ ବରଷେ ତେଜିଲେ ଅବନୀ
ସିଂହାସନେ ଭଣି ବୀର କୁମାର । ୧୮ ।
'ମୟୂର' ଦାୟାଦ ସେ ଖ୍ରମୁଣ୍ଡ ରାୟ
ଅଳ୍ପ କାଳ ମାତ୍ର ପରଜା ପାଳି
କୁଳ ଗଉରବ ସମ୍ବାଦ ଗମିଲେ
ପରଲୋକ ପଥେ ଚରଣ ଗୃହ । ୧୯ ।
କେଶରୀ ବିକ୍ରମ ଶ୍ରୀ ହରିକେଶରୀ
ବର୍ମା ବୀରମଣି କାଦମ୍ବ-ରବ
ସପ୍ତ ବର୍ଷ ଦୀପ୍ତ ରଶ୍ମିରେ ଛବିଲେ
କାଦମ୍ବ କେତନେ ଭାସ୍ୱର ଛବ । ୨୦ ।
ଯୋଗ୍ୟ ପିତାଙ୍କର ସୁଯୋଗ୍ୟ ନନ୍ଦନ
³ ତୃତୀୟ ମୟୂର ବର୍ମା ଭୂପତ

---

୧ ସୂର୍ଯ୍ୟ ଓ ଚନ୍ଦ୍ର ବଂଶୀୟ 'ଅର୍ଯ୍ୟ' କ୍ଷତ୍ରିୟମାନେ ନୃସିଂହ ବଂଶୀୟ ଦେବମାନଙ୍କର ବଂଶଧର । ଏ ସମ୍ବନ୍ଧୀୟ ବର୍ଣ୍ଣନ ବଚରଣ ମତ୍ ପ୍ରଣୀତ 'ଭରତ' କାବ୍ୟରେ ବର୍ଣ୍ଣନାକୃତ ।

୨ କଦମ୍ବମାନଙ୍କ ପ୍ରାଚୀନ ମୁଦ୍ରାରେ କେଶରୀ ଛବ ବର୍ତ୍ତମାନ୍ ରହିଅଛି ।

୩ ପ୍ରଥମ ମୟୂର ବର୍ମା କାଦମ୍ବ ସିଂହାସନର ପ୍ରତିଷ୍ଠା କରିଥିଲେ । ଦ୍ୱିତୀୟ ମୟୂର ବର୍ମା ଲୁପ୍ତ ସ୍ୱାଧୀନତା-

ଦୀର୍ଘକାଳ ଧେନ    ପିତୃ ରାଜଦଣ୍ଡ
ପାଳନ୍ତେ ଗୌରବେ    ପ୍ରଜା ସନ୍ତୁଷ୍ଟ । ୨୧ ।
ଚତୁର୍ଦ୍ଦଶ ବରଷ    ବିସ୍ତରି ବିକ୍ରମେ
ସୁଖ ପରେ ଯୁଦ୍ଧେ    ଅବିରତ ଦଳ
ସୁବୃଦ୍ଧ ବୟସେ    ଭାଗ୍ୟ ନିୟନ୍ତଣେ
ରଣକ୍ଷେତ୍ରେ ବୀର    ପଡ଼ିଲେ ଝଳ । ୨୨ ।
ଚତୁରଙ୍ଗ ବଳ    ସଙ୍ଗେ ନିଜ ପ୍ରାଣ
ଅଦ୍ଭୁତ ଦେଇ ସେ    ଆହବାନଳେ
ଅଗତ କୁଳର    କୌଟିଲ୍ୟ କବର୍ତ୍ତ
ରଖି ନ ପାରିଲେ    ରାଜ୍ୟ କୌଶଳେ । ୨୩ ।
କାଦମ୍ବ ଗୌରବ    ଗରବର ଧନ
ହେଲା ଅବସାନ    ଅସିଲା ନାଶି,
କାଦମ୍ବର ନାମ    ଖ୍ୟାତ ଗୋତ୍ର ସ୍ମୃତ
ସେ ଧନ ଗଲା ସେ    ଅନ୍ଧାରେ ମିଶି ।୨୪।
ଶାରକଣ୍ଠ ଶିଶୁ    ଲମ୍ବାଇ ସ୍ବକଣ୍ଠେ
କାଦମ୍ବ ମହର୍ଷୀ    ଦକ୍ଷିଣ ମୁଖେ,
ଅଙ୍ଗ-ସଂଗୋପନେ    ଗଲେ ବନମଣ୍ଡରେ
ଅନାଥିନୀ ବେଶେ    ଦାରୁଣ ଦୁଃଖେ ।୨୫।
ନିୟତିର ଗତ    ରୋଧିଛନେ, ଜଗତେ
ଲକ୍ଷମ ପୌରୁଷ    ନୁହେ ତ ଦକ୍ଷ,
ଲେଖାଇ ଧଏ ସେ    ମହାଦାନି ଦମ୍ଭ
ପୂର୍ବାଇ ପୂହକାରେ    ପାଷାଣ ବକ୍ଷ ।୨୬।

---

ସ୍ଥଳଭୃତ୍ୟମାନଙ୍କ କବଳରୁ ଉଦ୍ଧାର କରି କୁଳ ଗୌରବ ବଢ଼ାଇ-ଥିଲେ। ଚୂଡ଼ାସ୍ତ ମୟୁର ବର୍ମାଙ୍କ ସମୟରେ ବାନବାସୀରୁ କଦମ୍ବ ବଂଶର ସକଳ ଲୁପ୍ତ ହେଲା। ଖ୍ରୀ: ୧୧୩୧।

ରାଜରାଣୀ ହୁଏ ଡାକାଇନୀ, ବସେ
ରାଜସିଂହାସନେ ପଥ ଭିଖାରୀ,
ତାହାର ନିଦର୍ଶନେ ପାଟରେ ଜନ୍ମଦୁଃଖୀ
ପଲଟେ ମହେନ୍ଦ୍ର ଭୂତ ଧିକ୍କାର । ୨୭ ।

ସ୍ୱର୍ଗ ଅବର୍ତ୍ତିନେ ଜନକ ନନ୍ଦନା
ଥିଲେ ଯେବେ ଯହିଁ ରକ୍ଷ ଅଟକେ,
ଅନଳ ପରୀକ୍ଷା ଘଟିଥିଲା ତାଙ୍କ
ସ୍ୱର୍ଗ ପଥେ ସେହିଁ ଲଙ୍କା କଟକେ । ୨୮ ।

ଘଟନା ସଂଯୋଗେ ନିଷ୍ଠୁର ନିୟତ
ଢୋଳ ତୀବ୍ର ଦୁଃଖୀ ଅନଳ ଶିଖା,
ଏ ରାଜ-ରାଣୀଙ୍କି ଭିଖାରୁଣୀ ବେଶେ
କଲା ନେଇ ତହିଁ ଅଗ୍ନି ପରୀକ୍ଷା । ୨୯ ।

ସେ ଅଗ୍ନି ଗର୍ଭରୁଁ ସପ୍ତ ଶିଖା ଭେଦ
ଉଦ୍‌ଭବିଲେ ସପ୍ତ ବୀର ପୁଙ୍ଗବ
ଶୁଣିଲେ—ଅତୀତ ଗର୍ଭରୁଁ ଧିକ୍କାର
ଯେଏ ପୁନଃପୁନଃ ପୂର୍ବ ଗୌରବ । ୩୦ ।

ସପ୍ତ ନପ୍ତା ପାଶେ କାଦମ୍ବ ମଣ୍ଡପୀ
ଅଶ୍ରୁ ଜର ଜର ଅନ୍ତିମ ଶେଷେ
ଫୁଲପିଲେ ଯେବେ କୁଳ କୀର୍ତ୍ତି ଗାଥା
ବୀରବାଳା ଦୀପ୍ତ ଅନଳ ତେଜେ । ୩୧ ।

ଶିର ଅବଧୂତା ସ୍ୱର୍ଣ୍ଣମୟୀ ମୂର୍ତ୍ତି*
ନିଜ ଇଷ୍ଟଦେବୀ "କୁମାରୀ"ଙ୍କର
ଜ୍ୟେଷ୍ଠ ନପ୍ତା ବକ୍ଷେ ଦୋଳାଇ ଅର୍ପିଲେ
ସୁଜ୍ଜ୍ୱଳ କୃପାଣ ସ୍ମୃତ ସମ୍ବର । ୩୨ ।

* ଇନ୍ଦ୍ର କନ୍ୟା ଦେବସେନା, କାର୍ତ୍ତିକେୟଙ୍କର ପତ୍ନୀ ।

ଭାଷିଲେ ଉତ୍କ୍ରୋଶେ— ଶୁଣରେ କୁମାରେ
ନରସିଂହ କୁଳ ତୁମ୍ଭ ଜନମ
ଶୃଗାଳ ପରିଏ ନ ହେବ କେବେହେଁ
ସାଧିବ ଜଗତେ ସାଧୁ ଧରମ । ୩୩ ।
ଶୁଣ ଜୀବଗଣ ଏ ପୁରାଣ ବାଣୀ
ସେ କାଳେ ଦୁରନ୍ତ ତ୍ରିପୁରାସୁର,
ଭୀମ ପ୍ରତାପରେ ଭୀମ ରଣ ରଙ୍ଗେ
ତେଜି ତନୁ ଗଲା ଶମନ ପୁର । ୩୪ ।
ତ୍ରିପୁର ବିଜୟୀ ତ୍ରିପୁର-ନିଧନେ
ତ୍ରିପୁରାରିଙ୍କର ଲଲାଟୁଁ ଝରି,
ସ୍ୱେଦ ବିନ୍ଦୁ ମାନ କଦମ୍ବ କୋଟରେ
ପଡ଼ିଲ ଭୂମିର ତାରକା ସରି । ୩୫ ।
ସମ୍ଭବିଲେ ତହୁଁ ତ୍ରିନେତ୍ର କଦମ୍ବ
ତ୍ରିଲୋଚନେ ରୁଦ୍ର ଶକତି ଦେଖା,
ଅରାତି ନାଶନ କରୁଥିଲେ ସେହୁ
ବେନି ଭୁଜେ ଘେନି କୃପାଣ ବେନି । ୩୬ ।
* ଏହୁ ନୀପକୁଳ ସେ କଦମ୍ବ ଠାରୁ
✝ ପରେ ଉଦ୍ଭବ ଲଭି ଶିବଙ୍କ ଅଂଶ,
ସେ ମହାବୀରଙ୍କ ମହିମା ଅଲିଭି
ପ୍ରଖ୍ୟାତ ଭାରତେ କଦମ୍ବ ବଂଶ । ୩୭ ।

---

* ସାଧାରଣତଃ ବଂଶ ଲତା ବା ବୃକ୍ଷ ରୂପେ କଳ୍ପିତ ହୁଏ । ସୁତରାଂ କଦମ୍ବ ବଂଶ କଦମ୍ବ ବୃକ୍ଷ ରୂପେ କଳ୍ପିତ ହେବାରେ ବୈଚିତ୍ର୍ୟ କିଛି ନାହିଁ । ✝ କଦମ୍ବମାନେ ଶୈବ ହେତୁ ଶିବଙ୍କୁ ସୃଷ୍ଟିକର୍ତ୍ତା ବଂଶପିତା ରୂପେ ଆରାଧନା କରିବା ସ୍ୱାଭାବିକ । ବସ୍ତୁତ ଶିବ, ବିଷ୍ଣୁ, ବ୍ରହ୍ମା ଏକ ପଦାର୍ଥ ।

ତାଙ୍କ ସଂରକ୍ଷିତ          କୃପାଣ ଯୁଗଳ
ଅଟେ ଅନୁପମ          ଏ ଅସି ଗୋଟ,
ଅରିନ୍ଦମ ବୀର          ମୟୂର ବର୍ମାଙ୍କ
ବୀର୍ଯ୍ୟ ସ୍ମୃତି ଏଥି          ରହିଛନ୍ତି ଘୋଟି । ୭୮ ।

ଅରାଧିବ ସଦା          ଏହୁ ଅସିବର
ପୂଜି ବାଗେଶ୍ୱର          ଅଭୟ ଦେବ,
ଅନାଗ୍ରୀ କୁମାରୀ          ପ୍ରସାଦେ ତୁମ୍ଭର
ବର୍ଦ୍ଧିତ ହେବ          ସର୍ବ ସମ୍ପଦ" । ୭୯ ।

ଏହା କହି ବୃଦ୍ଧା          ପିତୃ ମାତୃ ଦ୍ୱାର
ସପ୍ତ ନପ୍ତା ଶିରେ          ଅଶିଷ ଢାଳି,
ନିର୍ବେଦେ ମୁଦିଲେ          ଅନ୍ତିମ ନୟନ
ପରଲୋକ ପଥେ          ଚରଣ ଚାଳି । ୮୦ ।

କିଛୁ ଦିନ ଅନ୍ତେ          ସପ୍ତ ସହୋଦର
ଦେଖିଲେ ଉତ୍କଳ          ବଣିକ ଦଳ,
ସୁଦୂର ଉତ୍ତରେ          ଉତ୍କଳ ବୋଇତେ
ଯାଉଥିଲେ ପଣ୍ୟ          ସମ୍ଭାର ଘେନି । ୮୧ ।

ତାମ୍ରମୟ ସେହି          ବସନ୍ତ ବୋଇତେ
ଦୋହୁଥିଲା ପାଲ          ଗଙ୍ଗ ଲକ୍ଷ୍ମୀନେ,
ଉତ୍କଳ ସନ୍ତାନ          ଦର୍ପିତ ଚରଣେ
ନାଚୁଥିଲେ ସତେ          ସିନ୍ଧୁ ମନ୍ଥନେ । ୮୨ ।

ସେ ପୋତେ ଅବେକ୍ଷି          ସମସ୍ତ ସୋଦର
ପ୍ରବେଶିଲେ ଅସି          ଉତ୍କଳ ଯେବେଁ
ଶୁଣୁଥିଲେ ଯାହା          ଉତ୍କଳ ବିଭବ
ସାକ୍ଷାତ ଗୌରବ          ଦେଖିଲେ ନେତ୍ରେ । ୮୩ ।

ବିରାଟ ଗମ୍ଭୀର ତୋର ସୌଧବର
ଅଭ୍ରଂଲିହ ଶୃଙ୍ଗ କୋଣାର୍କ ଚୂଳେ,
ବିଶାଳ କଳସେ କନକ କମଳ
ଫୁଲୁଥିଲା ବ୍ୟୋମେ ସେ ସିନ୍ଧୁ କୂଳେ । ୪୪ ।

ମହୋଦଧି ନୀରେ ଅବଗାହି ଯେବେ
ପ୍ରାଚୀ ବ୍ୟୋମ ସ୍ଥଳେ ଉଠନ୍ତ ରବି,
ନୀଳାଚଳ ସେତୁ କମଳିନୀ ବକ୍ଷେ
ବିଶେଷେ ପୁଲକେ ଯୁଗଳ ଛବି । ୪୫ ।

ଯୁଗଳ ମୂରତି କମଳିନୀ ବନ୍ଧୁ,
ନୀରଜନା ଭବ ବିଶ୍ୱ ଜୀବନେ,
ବିଶ୍ୱ ରକ୍ଷା ବ୍ରତ ସାଧନେ ଉଠନ୍ତି
ସେ କୋଣାର୍କ ଚୂଳେ ‘ନୀଳ ଗଗନେ । ୪୬ ।

ଜଗନ୍ତୁ ଶିଳ୍ପୀର କର କଉଶଳେ
ହାବଭାବେ ବର୍ଣ୍ଣ ବିଭବେ ରଞ୍ଜି
ପ୍ରସ୍ତର ଖଣ୍ଡ ଜୀବନ୍ତ ଯେସନେ
କେତେ ଫୁଲ ଫଳ ଯତନେ ଖଞ୍ଜି । ୪୭ ।

ବାର ବରଷର ‘ଭବ’ କଉଶଳେ
ଉତ୍କଳ ଶିଳ୍ପୀର କେତେ ଯତନେ,
ତେସନେ ଉତ୍କଳ ଜୀବନ୍ତ ଗରିମା
ଚିରନ୍ତନ ମଣ୍ଡି କଳା ରତନେ । ୪୮ ।

ସେ କଳା ସମ୍ପଦେ ଖଣ୍ଡେ ଅଙ୍କିତ
କୋଣାର୍କେ ଶ୍ରେଷ୍ଠେ ଜାଜ୍ୱଲ୍ୟ ଭାବେ ।
ଉତ୍କଳ ନାଥଙ୍କ ବୁଦ୍ଧି ବଳ ବିଦ୍ୟା
ବିଭବ ଲହିଲେ ବସୁଧେ ଧୀରେ । ୪୯ ।

ତୀର୍ଥାଟନ ଯାଏ କାଦମ୍ବ[illegible] ମାନେ
ନୀଳାଚଳ ଦେଖି ବିଷର୍ଣ୍ଣ ବଦନ
ଅନୁକୂଳ ହେବ ଅନ୍ୱେଷଣେ ଏବେ
ଭମ୍ନଚନ୍ଦ୍ର କେତେ ଫେରି ଭାନନେ । ୫୦ ।
ସେ ସପ୍ତ ସୋଦରଙ୍କୁ ଅନାଗତ ଏକୁ
ଶ୍ରୀ ଭଗ୍ନ ପ୍ରତାପ ଜାଦମ୍ବ ବୀର
ମଣ୍ଡିଚନ୍ଦ୍ର ଅଙ୍କ ସଫଳିତ ଦେଶେ
ଚିରସ୍ମୃତା । ଦୋର ମନୋଜ୍ଞ ଗୀତ । ୫୧ ।



# ଚତୁର୍ଥ ସର୍ଗ

ଭୁମ୍ବା 'ପ୍ରମଦାଙ୍କ ସୌନ୍ଦର୍ଯ୍ୟ ଲାଳସେ
ଧାଉଁଥିଲେ ଏଥୁ ବାରେନ୍ଦ୍ର ବାଳା,
ଦେଖ ଅସିଛନ୍ତି ପଲ୍ଲୀ-ବାସିନୀଙ୍କ
ବିମଳ ଶରଧା କୁସୁମ ମାଳା ।୧।

ନାଗେଶ୍ୱର ରେଣୁ ରଞ୍ଜିତ ଚନକ
ଚମ୍ପକ ସୁରଭି ସ୍ନିଗ୍ଧ ସମୀରେ
ସନ୍ତର ତୋହର ବାଞ୍ଛା-ଲୀଳା ଭୁମେ
ଭ୍ରମିଲେ, ସୁଲକ୍ଷୀ ସାଧନ ଧୀରେ ।୨।

ଗ୍ରାମୁଁ ଗ୍ରାମାନ୍ତରେ ପୁରେ ପୁରେ ସେବେ
ଭ୍ରମୁଥିଲେ ଏଥୁ ଭୈରବୀ ବେଶେ,
ପାର୍ବତୀ ପ୍ରକୃତି ମନୋଜ୍ଞ ସୁମନ
ଗନ୍ଧି ଦେଉଥିଲ ସୁନୀଳ କେଶେ ।୩।

ଅମର୍ତ୍ତ୍ୟ ପ୍ରତିଭା ବିଲୋକନେ ସେତ
ମୃଦୁଳ ସୁରଭି ବାୟୁ ଲହରେ,
ଲୋଧ୍ର ପରାଗରେ ବଦନ ପଙ୍କଜ
ରଞ୍ଜି ଦେଉଥିଲ କେତେ ଆଦରେ ।୪।

ଶାନ୍ତ ଅପହାସ ଅଧିତ୍ୟକା ଥିଲ
କେତେ ମଠେ ଶାନ୍ତ ଶଙ୍ଖ ବଜ୍ଜନେ,
ବେଲାରେ ସେ ଭାବ ବାଜୁଥିଲ ସତେ
ସରସା ଭୁଲର ମୃଦୁ ଗୁଞ୍ଜନେ ।୫।

ମନ୍ଦର ନିଃସ୍ୱନ          ପ୍ରାଏ ଶୁଭୁଥିଲା
'ହଂସରକ୍ଷା'ର          କଂସାଳ ଦ୍ୱନ୍ଦ୍ୱ
ବିହଙ୍ଗମ ଦମ୍ଭ          କୁଳର ଅନ୍ତକ
* ଅଟେ ଯା ସ୍ୱହସ୍ତେ          ଶମନ ଘଣ୍ଟି । ୬ ।

ଦୀର୍ଘ ନାସା ତୁଣ୍ଡ          ବାଢ଼ୁଥିଲା ଜଟେ
ଉଚ୍ଚ ତରୁ ଶିରେ          ଧନେଶ ପକ୍ଷୀ,
ବୀର ବାମା ଗମେ          ଏ ବନ ଭୂମିକୁ
ମଙ୍ଗଳ ଶକୁନ          ଯେତେବେ ବିଲକ୍ଷି । ୭ ।

ବନ୍ଧ କଲ୍ଲୋଳିନୀ          ଅଛୁ ଜନା ମନେ
ଲୁଞ୍ଚା ବେଶେ          ସ୍ନେହ ସଲିଳେ ଧୋଇ ।
ପୂଜା ନ ଥିଲେ          ତହୁଁ ବନ୍ଧୁବରେ
ଶୀଳା ପୀଠେ ତାଙ୍କ          ଚରଣ ଥୋଇ । ୮ ।

କାନନ ଲକ୍ଷ୍ମୀର          ପ୍ରଲମ୍ବ କୁନ୍ତଳ
ପରାଏ ଲମ୍ବାଇ          ଶିଖଣ୍ଡ ଭାର;
ଜାଗ୍ରତ ବସ୍ୱପ୍ନେ          ଶୁଣୁଁ ଥିଲେ ଡାକ
ଟାଳ ତରୁ ଶିରେ          ଶିଖଣ୍ଡୀ ବାକ । ୯ ।

କୋଟି ହେମ ରତ୍ନ— ଜମ ତପନୀୟ
ଅଂଶେ ବୀରପକ୍ଷ          ପ୍ରବାଳ ଗଞ୍ଜି,
ଯା' ଦେହେ ପ୍ରକୃତ          ବର୍ଣ୍ଣନ୍ୟାସେ ଦଏ
ଶତ ବକ୍ର ଧନୁ          ସୁଷମା ରଞ୍ଜି । ୧୦ ।

---

* ଏହି ପକ୍ଷୀ ଅନ୍ୟାନ୍ୟ ପକ୍ଷୀମାନଙ୍କର ଡିମ୍ବଗୁଡ଼ିକ ଭଙ୍ଗ ତଦନ୍ତର୍ଗତ ପକ୍ଷୀଡ଼ିମ୍ବ ସବୁ ଖାଇଯାଏ । ଏହାର ବୈଜ୍ଞାନିକ ନାମ 'ହଂସରକ୍ଷା' ।

ଦୌର କରେ ଯେତେବ   ଝଲଙ୍କ ଜଠର
ଇନ୍ଦ୍ର ନୀଳମଣି   ମଞ୍ଜୁଳ ବପୁ,
ବିଶ୍ୱ ଶାସକର   ଭବ୍ୟ କୂଳ ଲେଖେ
ସେ ଶୋଭା ଶଂସନେ   ହେବେ କି ଦକ୍ଷ ।। ୧୧ ।

ମାଣିକ୍ୟ ମଞ୍ଜୁଳ   ଚନ୍ଦ୍ର ପଦ ରଞ୍ଜୁ
ମରକତ ଜ୍ୱଣା   ପତ୍ର-ବସନ—
'ଶୂନ୍ୟ ଲଟପାଟ'ଟି   ଲଗ୍ନଥାଇ ଥାଏ
ମହା ଶୂନ୍ୟେ ନୀଳ   ରେଖା ଯେସନ । ୧୨ ।

ମହାନୀଳ ବ୍ୟୋମେ   ମିଶି ଯାଇଥାଏ
ପରମାତ୍ମା ଅଙ୍ଗେ   ଜୀବାତ୍ମା ସବୁ,
ଯାମିନୀ ସଂଗତ   କ୍ଷଣେ ସେ ଛଟକେ
ଗତେ ମନୋଜ୍ଞ ବା   ସଭ ଅଚଳ । ୧୩ ।

କ୍ଷୁଦ୍ର ପକ୍ଷୀଟି ସେ   କ୍ଷୁଦ୍ର ଶସ୍ୟ କଣା
ଖାଇ, କ୍ଷୁଦ୍ର ନୀଡ଼େ   ଯାପେ ଜୀବନ,
ତାହୁଁ ଏ ଶକତ   ଲଭନ୍ତି, ଯା ଦେଖ
ଏତେ ସ୍ଫୂର୍ତ୍ତି, ଗତ   ଏତେ ଜୀବନ । ୧୪ ।

ପ୍ରାଣୀ ସମାକୁଳ   ଅଧିତ୍ୟକା ସେତ
ପଶୁ ପକ୍ଷୀଙ୍କର   ବିଳାସ ସ୍ଥଳୀ
ବିରଜନ ଯହିଁ   ଫୁଲେ ଫଳେ ଶୋଭ
ଦେଖେ ଗୁଳ୍ମଲତା   ଦ୍ରୁମ ଅବଳି । ୧୫ ।

ଝରସମ ସ୍ନିଗ୍ଧ   ସମୀର ହିଲ୍ଲୋଳେ
ପୀଯୂଷ ପ୍ରବାହ   ଖେଳେ ପ୍ରସବ
ପ୍ରଭ ଯାଏ ଯହିଁ   ଅନ୍ତରେ ଅନ୍ତରେ
ସଞ୍ଜୀବନୀ ଶକ୍ତି   ଜଠେ ସାଦର । ୧୬ ।

ପଥଶ୍ରମେ ଶ୍ରାନ୍ତ ପଥିକର ଶ୍ରାନ୍ତ
ବନ୍ଧୁବତ ଭବ ପଲକ ;ମାତ୍ରେ
ସ୍ନେହ ସମ୍ଭାଷଣେ ଶାନ୍ତିର ଚନ୍ଦନ
ବୋଳି ଦେଉଥାଏ ଘର୍ମକ୍ତ ଗାତ୍ରେ । ୧୭ ।
ସେ ସୁଧା ପ୍ରବାହେ ଅହ୍ଲାଦେ ସ୍ନାପିତ
କୁଞ୍ଜ ଶାଖୀ ଅଧ ବିହଙ୍ଗ ବାର
ଜମ୍ବୁ ବଟ ଶାଖେ 'ସ୍ୱର୍ଗ' ଥାନ୍ତି ସୁଖେ
ପକ୍ୱ ଫଳ ରାଶି ଭବ ଅହାର । ୧୮ ।
ବ୍ୟୋମ ଚୁମ୍ବୀ ଉଚ୍ଚ ଶାଳ ତରୁ ଶିରେ
ଲତା ଦୋଳାସନେ ଦୋଳି ଆନନ୍ଦେ
ବାଳ୍ମୀକି ସୁଖେ ଯୋଗିଅ ଦମ୍ପତି
ନନ୍ଦନ ମୁରଲି ମୋହନ ଛନ୍ଦେ । ୧୯ ।
ସେ ସମୀର ସ୍ରୋତେ ଆନ୍ଦୋଳିତ ହୋଇ
ଉଡ଼େ ଫର ଫରେ ପ୍ରଲମ୍ବ ପୁଚ୍ଛ,
ହୋଇ ଯାଉଥାଏ ବର୍ଣ୍ଣ ବଇଭବେ
ମୋତି ମାଣିକ୍ୟର ମାଳିକା ଗୁଚ୍ଛ । ୨୦ ।
* ଯୋଗୀ ଦେହେ ଶୋଭେ ଶୁକ୍ଳ ବାସଖଣ୍ଡି
ଯୋଗିଅଣୀ ଅଙ୍ଗେ ରଙ୍ଗ ବସନା
ମାନ ଦେଖିକର ମସ୍ତକ ନୀଳିମା
ଧୃତ୍‌ଧାରଭ ଇନ୍ଦ୍ରନୀଳ ରଚନା । ୨୧ ।

---

* ଯର୍ଣ୍ଣଙ୍କର ଅନୁଗାମୀ ହେଲେ । ପ୍ରାୟ ୨ ୨୫୦୦୦ ବର୍ଷ ପୂର୍ବେ ଶତାବ୍ଦୀ ଲେଖା ଏବଂ ମହାବନ୍ୟାରୂପୀ ପ୍ରଳୟ ତାଣ୍ଡ ଘଟିଥିଲା । ସେହି ଲକ୍ଷ୍ମଙ୍କର ବୃଷ୍ଟିବାତ୍ୟାର ପାର୍ଶ୍ୱ ପ୍ରକୃତ ନାଏଗ୍ରା ଓ ଜଳପ୍ରପାତ ଓ ହିମାଳୟାଦି ପର୍ବତ ଶ୍ରେଣୀର ସୃଷ୍ଟି ହେବ ହେବାର ଭୂତତ୍ତ୍ୱ ବର୍ତ୍ତମାନଙ୍କର ସିଦ୍ଧାନ୍ତ ।

ବିହଙ୍ଗ ଜଗତେ ସୁଷମା ସମ୍ପଦେ
ବହୁଛନ୍ତି ସେଠି ସ୍ୱର୍ଗୀୟ ଶିଳ୍ପୀ
ସ୍ୱବର୍ଣ୍ଣ ସତେକି ଅଙ୍କିଛନ୍ତି ? ସେତେ
ଝଲଗଲା 'ମେରୁ ମନ୍ଦର' ଗିରି । ୨୨ ।
ଇନ୍ଦ୍ରାଣୀ ସାଗର ସ୍ଥାପିଲା ଗରବେ
ଅମର ମଞ୍ଜୁଳ ନନ୍ଦନ ବନ,
ସେ କାହିଁକି ? ସେହି ସୁମେରୁ ଚରଣେ
କଲେ ଅର୍ପଣକ ଅନୁ-ଗମନ ? । ୨୩ ।
ସେ କାହିଁ ସେ ସୃଷ୍ଟି ରଖିଛନ୍ତି ସେ କି
ଅଦ୍ୟାପି * 'ନନ୍ଦନ ବିହଙ୍ଗ' ନାମେ ?
ସ୍ୱର୍ଗୀୟ ସୁଷମା ମଞ୍ଜୁ କୁଞ୍ଜ ପୁଞ୍ଜେ
ବିହରନ୍ତି ସଦା ଭାରତ ଧାମେ । ୨୪ ।
ନ ହୁଅନ୍ତି କେବେ ନୀରସ ନିରାଶ
ରୁଦ୍ର ବନସ୍ଥଳୀ ବିହଙ୍ଗ ବନ୍ଧା
କେତେ ଯେଣୁ ତାଙ୍କ ସ୍ୱର୍ଗୀୟ ଅନ୍ତର
ନନ୍ଦନ ମାଧୁରୀ ମନ୍ଦାର ମଧୁ । ୨୫ ।
ସୁମଧୁର ତାଙ୍କ ଲଳିତ ସଙ୍ଗୀତେ
ଜଳ୍ପିତ ହୁଏ ରମ୍ୟ କାନନ,
ପ୍ରତି ତାନେ ପ୍ରତି — ଯୋଗିତା ଦେଖାଇ
କରେ ଭୃଙ୍ଗରାଜ ଅଙ୍କୁ କୂଜନ । ୨୬ ।
ସ୍ୱବକ୍ଷ ଫୁଲାଇ ମାଟିଆ କପୋତ
ଘୁମରେ ଗମ୍ଭୀରେ ସ୍ୱପ୍ରିୟା ପାଶେ,
ମୋହନ ଗରବେ ଅଧର ଚୁମ୍ବନେ
ମାତିଥାଏ କେତେ ରଙ୍ଗେ ବିଳାସେ ।

* Indian Paradise Bird.

ଈର୍ଷ୍ୟା ମଦେ ମତ୍ତ    ଅପର କପୋତେ
ବଲେଇ ଅଦୂରେ    ଅସୂୟା ଭରେ
ପ୍ରବଳ ବାଦମେ    ଅକ୍ରମି ସବେଗେ
ମାତଙ୍ଗଠେ ଯଣେ    ଭୀମ ସମରେ । ୨୮ ।

ଘୂର୍ଣ୍ଣ ବଣି ମଧ୍ୟେ    ଚାମ ପକ୍ଷ ଢାଳେ
ଏଡ଼ାଇ ଚଞ୍ଚୁରେ    ଅବ୍ୟର୍ଥ ଲକ୍ଷ୍ୟ
ଦକ୍ଷ ପକ୍ଷାଘାତେ    ପ୍ରତି ପକ୍ଷେ ଜିଣି
ଅସେ ପ୍ରିୟା ପାଶେ    ଫୁଲ୍ଲ ବକ୍ଷ । ୨୯ ।

ଯେଉଁ ସୁଖେ ହୃଷ୍ଟ    ନାଚୁଛି ଜଗତେ
ପ୍ରମୋଦେ ପ୍ରମାଦେ    ଲଗାଇ ଧନ୍ଦା
ସେହି ପ୍ରେମ ସୁଖେ    କପୋତ ଜୀବନ
କପୋତୀ ହୃଦେତ    ହୋଇଛି ବନ୍ଧା । ୩୦ ।

ଋତୁ ଅନୁସାର    ଫଳଭରେ ସେବେ
ଲେଚି ପଡ଼େ ଡହୁଁ    ଜାମ୍ବୁ କଦଳୀ
ଶିଙ୍କଳୀ ପନସ    କଦମ୍ବ ରସାଳ
ବଉଁଚ ଡୁମ୍ବୁଡ଼ି    ଦ୍ରୁମ ଅବଳି । ୩୧ ।

ଶାଖାମାନଙ୍କରେ    ଶାଖାମୃଗ କୁଳ
ଭୁଞ୍ଜି ଫଳ ରସି    ପ୍ରମୋଦ ଭରେ;
ସୁଦୀର୍ଘ ଲମ୍ଫନେ    ଶାଖୁଁ ଶାଖେ ପୁଣି
ବୃକ୍ଷୁଁ ବୃକ୍ଷାନ୍ତରେ    ଗମନ୍ତି ଖରେ । ୩୨ ।

ଆନ୍ଦୋଳିତ ହୁଏ    ତରୁ ଲତା କୁଞ୍ଜ
କଲ୍ଲୋଳିତ ନୀଳ    ସାଗର ସର
ସିନ୍ଧୁ ନୀର ସାହା    ଗହଳ ପଲ୍ଲବେ
ବହଳ ନୀଳିମ    ମୁରତି ଧର । ୩୩ ।

ବାୟୁ କମ୍ପନରେ ପଡୁଥାଏ ଝଡ଼େ
ପଚେଲୀସ ଫଳ ପାଦପ ତଳେ
ପୁଣି ମାନ୍ଦା ତାର ବଢ଼ାଇ ତାଙ୍କର
ଲମ୍ଫନ ଧାବନ ଧ୍ୱନନ ବଳେ । ୩୪ ।

ଫଳ ଆଶେ ଆସେ କୃଷ୍ଣମୃଗ ଝେବେ
ଶବ ତରୁ ଝେବେ ଘଣ୍ଟୁଳୀ ମୂଳେ,
ମଧୁରସ ସ୍ପୃହା ମେଣ୍ଟାଇ କାଅଳ
ମହୁଲ ବନେ ସେ ମହୁଲ ଫୁଲେ । ୩୫ ।

ସନ୍ତୁଷ ଚରଣେ ଗୁପ୍ତି ଅମ୍ବ ଫଳ
ଆଦରେ ଭଲ୍ଲୁକ ପିଅଇ ରସ,
ବନବାଳାଙ୍କର ସଞ୍ଚାର ଶବଦେ
ଅପସରି ଯାଏ ନୋହି ବିରସ । ୩୬ ।

ଏକ ବନେ ସେ ସେ ସହଚର ରୂପେ
ଯାପନ୍ତି ଜୀବନ ଦିବସ ଜାଣି,
ଶଙ୍କା ଭୀତ ଲେଶ ସଞ୍ଚାରେ ନାହିଁ ତ
ଦ୍ୱେଷ ହିଂସା ତାଙ୍କ ଅନ୍ତରେ ପିଶି । ୩୭ ।

ସଙ୍ଗେ ଘେନି ଭସ୍ମ, ଭରଣୀ, କଲବ
ଯେବେ ବେଳେ ଦଳ କଦଳୀ ବନ,
'ଭଡ଼ ଭଡ଼େ' ମହା ଦ୍ରୁମ ଶାଖା ଭାଙ୍ଗି
ଯାପି ଦଏ ବନ- ବାସୀଙ୍କ ମନ । ୩୮ ।

ନିଶୀଥ ଅନ୍ଧାରେ ନିଅଁ ହୁଲା ଘେନି
ତଡ଼ ନାଏ ଭୂୟାଁ ସଙ୍ଗିନୀ ସଙ୍ଗେ,
ଲାଞ୍ଜ ଧରି ଝେବେ ସାହସିନୀ ବାଳା
କଚ୍ଛୁ ଦଏ ଭସ୍ମ— ଚରମ ଅଙ୍ଗେ । ୩୯ ।

ନିଷାଦେ ଗରଜି    ଭଗ୍ନ ଯୂଥପତି
ଭଗ୍ନ ଫଳ ଯେନି    ଫଳାଏ ଖରେ
ମଜା ଯୌବନେ ଭୁସ୍ମାଂ    ଦେଖେ ପ୍ରାତେ ଯାଇ
ଖୋଳ ଅଛି ଫଳ    ନାହିଁ ଭିତରେ । ୪୦ ।

ଧନ୍ୟ ବୀରବାଳା    ସେ ବନବାସିନୀ
ନାଚୁଛି ଅନ୍ତର-    ନୟନେ ମୋର,
ରୂଠା ଲଗାଉଡ଼ା    ଲୁଣଭଟି ଛଟା
ସଞ୍ଚାରଇ ଶତ୍ରୁ    ହୃଦୟେ ଘୋର । ୪୧ ।

ଦକ୍ଷହସ୍ତେ ବାଳା    ଅଗ୍ନି ହୁଳା ଯେନି
ଅଗ୍ନି ନେଣେ ଧାଏଁ    ପବନ ବେଗେ
ବାୟୁବର୍ଣ୍ଣି ଭେଦ    ଝଂଟେ ହୁଳାଟି
ସ୍ୱର୍ଣ୍ଣ ସୌଦାମିନୀ    ଯେସନ ମେଘେ । ୪୨ ।

ଘର୍ମେ ଘର୍ମେ ତାର    ବଦନ ଶରୀର
ଝଲକୁଛି ଭର୍ମ    ଲଢବା ସର
ମର୍ମେ ମର୍ମେ ଛୁଟେ    ତପ୍ତ ରକ୍ତଧାର
ଜିଗୀଷା ଅନଳେ    ଖରେ ପ୍ରସର । ୪୩ ।

ଗଣା ଗଣ ଶିଳା    ସଙ୍କୁଳ ସେ ପଥେ
ତୀବ୍ର ଲକ୍ଷ୍ୟ ଦୃଢ଼େ    ଦ୍ରୁତ ଚରଣ
ସଞ୍ଚାଳ ଚଞ୍ଚଳା    ଦେଖିବା ସଞ୍ଚାରେ
ଭରୁଛି ତ ଅଜ୍ଞ    ଜୀବନ ପଣ । ୪୪ ।

ପ୍ରତପଦ ଯେତେ    ପ୍ରତପଦ ତା'ର
ଭଲି ନେଇଅଛି    ସରଣୀ-ଶିଳା,
ତୀବ୍ର ଅବହେଳେ    ବଞ୍ଚାଇ ସ୍ୱତନ୍ତ୍ର
ରଚୁଛି ଏ ରଣ    ତାଣ୍ଡବ ଲୀଳା । ୪୫ ।

ଜଙ୍ଘୁଷ୍ଟ ଚରଣେ କୁଟିଳ କୁନ୍ତଳ
ନୀର ସ୍ରୋତେ, ନୀଳ ଶୈବାଳ ସର
ପ୍ରବାହିନୀ ପ୍ରାଏ ପଶ୍ଚାତେ ସରଣୀ
ବକ୍ଷ ଯାଉଛି ଢ଼ ଖରେ ସନ୍ତର । ୪୬ ।

ନୀଚ ପଲ୍ଲିମଧ୍ୟେ * ମଣ୍ଡ ଘରେ ସେତେବ
ଅନୂଢ଼ା ଝିଅ ମାନେ କୁମାର ମେଳେ
ଯାଉଥିଲ ନାଚି ରଙ୍ଗ ନାଚ ଗୀତ
ପ୍ରମୋଦେ ହୃଦୟ ହରଷ ହେଲେ । ୪୭ ।

ଜଳୁଥାଏ ରୁହ ଅନ୍ତରେ ଅନ୍ତର,
ସ୍ତମ୍ଭପାଶେ ପାଦ ନିବେଶି ତାପେ,
ନୃତ୍ୟ ଅବସାନେ ଚକାକାରେ ସବେ
ନିଦ୍ରା ଯା'ନ୍ତି ସୁଖେ ତେଜେ ଅନାତପ । ୪୮ ।

ଲଳିତ ଅଳାପେ ଲଳିତେ ସଞ୍ଚର
ଅନ୍ତରେ ଅନ୍ତରେ ପୀରତି ଲତା,
ଯୁବକ ଯୁବତୀ ହୃଦୟ ଅକର୍ଷି
ଛନ୍ଦଏ ଲୌହେ ଚୁମ୍ବକ ଯଥା । ୪୯ ।

ପ୍ରାକୃତ ବନ୍ଧନ ଛିଣ୍ଡାଇବା ଲାଗି
ବାନ୍ଧେ ସେ ବାଳାର ଶକତ ହୃଦେ,
ପ୍ରୀତି ମାସ ଭଳ ଗଣ୍ଠିଧନ, ତେଜି
ପିତା ମାତା ଭ୍ରାତା ସ୍ୱଜନ ବୃନ୍ଦେ । ୫୦ ।

---

* ଶୈତ୍ୟ ନିବାରଣ ନିମନ୍ତେ ସଂସ୍ଥାପିତ ତାପସ୍ଥୁଳ ସ୍ତୁପୀକୃତ ଅଗ୍ନିକୁ 'ଅନ୍ତର' କୁହାଯାଏ ।

ପୂର୍ବ ପଲ୍ଲୀ ତେଜି          ନଗରେ ନଗରେ
ପ୍ରଦେଶେ ପଳାଇ          ଦମ୍ପତି ସଙ୍ଗେ
ସେ ଧନ ଅସିଲ;          ଯେଣ୍ଡୁ ଦନ୍ତି ସେଥ
ନରୋଭକ୍ଷ ପ୍ରାଣ          ଧର୍ମ ପ୍ରସଙ୍ଗ । ୫୧ ।

କାନନେ କାନ୍ତାରେ          ନଗରେ କମାଣେ
କାସ୍ଥା ଗ୍ରସ୍ଥା ସବ          ବେନ ଜୀବନ
ବଳସ୍ଥିତ୍ତ ସଦା          ପ୍ରମୋଦେ ପ୍ରମାଦେ
ଅଦର ଅହ୍ଲାଦେ          ବନ ଭବନ । ୫୨ ।

ମୃଗସ୍ଥା ବିନୋଦେ          ବନ୍ୟ ଫଳମୂଳ
ଶାଗ ପତ୍ର ଅଧ          ସଂହର ସୁଖେ
ଶ୍ରମ ଦୁଃଖ ସ୍ଵଖ          ମଣିସେ ସ୍ଵଭାବେ
ଅଟେ ପ୍ରିୟ ସଙ୍ଗେ          ପ୍ରସନ୍ନ ମୁଖେ । ୫୩ ।

ନବ୍ଯଟ ନଦାଘେ          ତରୁ ଲତା କାଟି
* 'ତାହୁ' ସାଙ୍କ ଭୂର୍ମି          ଅନ୍ତ ଯତନେ
ଦନ୍ତ ଧଏ ଯେବେ          କମାଣ ଭୁମିକୁ
କଞ୍ଜା ଶୁଖା ଦାବେ          ତୀବ୍ର ଦାହନେ; । ୫୦ ।

କଞ୍ଜା 'ଗଣିଅଗ୍ନି'          କାଠର କଠାକୁ
ପାଦବ ପରଏ          ବାନ୍ଧ ବଳଣେ,
ବିଚରଣ କରେ          'ତ୍ରୁପା' ବାଡ଼ ଧର
ଅଗ୍ନି ରଶ୍ମି ମଧ୍ୟେ          ଅଗ୍ନେୟ୍ଯ ବଣେ । ୫୪ ।

---

* ଏହାହିଁ ତାହୁ ପୋଡ଼ାଇବାର ପ୍ରଣାଳୀ । ଏହା ଦ୍ଵାରା ଭୂମିର ଉର୍ବରତା ଚମତ୍କାର ରୂପେ ପ୍ରକାଶିତ ହୁଏ ମାତ୍ର ୨।୩ ବର୍ଷ ପରେ ଉକ୍ତ ଭୂମିଖଣ୍ଡ ସମ୍ପୂର୍ଣ୍ଣ ଉର୍ବରତ୍ଵ ଜୀବନୀଶକ୍ତି ଶୂନ୍ୟ ଅକର୍ମଣ୍ୟ ହୋଇଯାଏ ।

ଦର ଦଗ୍ଧ ଦାବେ ପ୍ରଜ୍ୱଳିତ ବହ୍ନି
'ତୃଷ୍ଟି' ଦେଉଥାଏ ଘଣ୍ଟ କୁ ଘଣ୍ଟ
ଚୋହ୍ଲର ଚର୍ଏ ଝଁର ଯାଉଥାଏ
ସ୍ୱେଦଝଁର ଧାର ଶଯ୍ୟରେ ବହି । ୫୬ ।

ବିମଳ ପ୍ରଣୟ— ସୋହାଗେ ଅଦୂରେ
ଝାଙ୍କ ବସିଥାଏ ଭୂଇଁ-ସୁନ୍ଦରୀ,
ଅଳ୍ପ ଲୁଣ ପିଣା ଗରମ ତୋଡ଼ାଣି
ରଖିଥାଏ ଯତ୍ନେ ତୁମ୍ବାରେ ଭରି । ୫୭ ।

ବହ୍ନି ତାପେ ତୃଷା ଉଠେ ବାରମ୍ବାର
ଭରଲ ଭୂଇଁର ପ୍ରାଣ କାତର
ପର୍ଣ୍ଣପୁଟେ ବାଳା ହରେ ସେ ପିପାସା
ଦେଇ ସେ ତୋରାଣି ଥରକୁ ଥର । ୫୮ ।

ପିପାସା ପ୍ରଶମେ ନବ ବଳେ ଭୂଇଁ
ଧାଇଁ ଯାଏ ପୁଣି ବହ୍ନି ଗରଭେ
ଫୁଲ୍ ଉଠୁଥାଏ ପ୍ରମଦାର ବକ୍ଷ
ଜର୍ମୀବାର ପଞ୍ଚ ସଙ୍ଗେ ଭରବେ । ୫୯ ।

ଗଗନ ମାଦଳ ବଜାଇ ବାଦଲ
ତାଲ ଦେଲେ ନବ ଅସାର ଧାର
ନବୀନ ଆଶାରେ ପ୍ରସାରିତ ହୁଏ
ଭୂଇଁ ଦମ୍ପତିଙ୍କ ନୟନ ତାର । ୬୦

ହଳ ସଙ୍ଗେ ଭୂଇଁ ବୀଜ ଶସ୍ୟ ଭଙ୍ଗେ
ଘମର୍ଁ ଭମାଣେ ନଙ୍ଗଳ ଧର
'ଟୁଣ୍ଡା' କି ଧର ଯାଏ ଭୂଇଁ ବାଳା
ମଳା ଅଧ ବାଟେ ତା ଅର୍ଣ୍ଣି ଭର । ୬୧ ।

ଏକ ହସ୍ତେ ଚାଳ ଝୁଣ୍ଟା, ଅପର
ହାତେ ବାଇମାନ ପକାଇ ଉର୍ଦ୍ଧ୍ୱ
ପାଦ ଚାଳି ସନେ ଘୋଡାଏ ମୃତ୍ତିକା
ପାଦେ ପାଦେ ଠାବ ଠାବରେ ରହୁ । ୬୨ ।

ରଖିଥାଏ ତା'ର ଚମାଣ ବେଢ଼ଷା
ବାଳୁତ ଯତନେ କେତେ ଅଦରେ
ଜଗୁଥିଲେ ସେହୁ ଜୀବନ ଜୀବିକା
ଜଳିବ ତ କ୍ରୋଧ ଅନଳ ଖରେ । ୬୩ ।

ମଣ୍ଡ ଘରୁ ସେବେ ପଳାଇ ଅସିଲ
ପ୍ରେମ ମୁଗ୍ଧା ବାଳା ଦୟିତ ସଙ୍ଗେ
ଖେଳି ନ ଥିଲ ତ ଏ ତୀବ୍ର ଜିଗୀଷା
ହୃଦ ସଟେଇ ତାର ପ୍ରେମ ତରଙ୍ଗେ । ୬୪ ।

ବିଶ୍ୱ ବିମୋହନ ଚାରୁ ଅପଘନ-
ସରସୀରେ ସଜ ସରୋଜ କଳୀ
ଅବ୍ୟକ୍ତ ଅହ୍ଲାଦେ ନଶୀଳ ନୟନ
ଟାଣି ଦେଉଥିଲ ବିଷାଦ ଦଳି । ୬୫ ।

ହସିଲେ ମଞ୍ଜୁଳା ମୂର୍ଚ୍ଛିତା ଗର୍ବେ
ଫୁଟି ଉଠୁଥିଲ ଜ୍ୟୋଛନା ରାଶି
ଝିଟିଲେ ପଦେ ସେ ସୋହାଗ ସଙ୍କେତେ
ଗାଉଥିବ ମୁଗ୍ଧ ହୃଦୟୁ ଭରି । ୬୬ ।

ମଦନ ମାଦକେ ମତ୍ତ ମତଙ୍ଗଜ
ଚଳ ଗରବକୁ ଦେଉ ଧିକ୍କାର
ଚାଲି ଯାଉଥିଲେ ଲୋଟି ପଡୁଥିଲ
ପ୍ରତି ପଦ କ୍ଷେପେ ଫୁଲ କହ୍ଲାର । ୬୭ ।

ସ୍ୱର୍ଗ-ନନ୍ଦନା, ନାହିଁ ତୁମ୍ଭର ତୁଲ
ନବ ଜଗତର, ବିକୃତ ଲେଶ
ଜୀବନ ଜୀବିକା ପଥେ ବାଧା ଦେଖି
ବଦଳୁଛି ସିନା ଏ ଭୈରବୀ ବେଶ । ୬୮ ।

ସ୍ୱଭାବେ ସରଳା ଶରଧା କୋମଳା
ସୋହାଗେ ତରଳା ଅଟେ ତା ମତି
ସୁପ୍ରେମେ ବିମଳା ସଞ୍ଚୟେ କମଳା
ତା କୁଟୀରେ ସେତ ସାବିତ୍ରୀ ସତୀ । ୬୯ ।

ସଙ୍ଗୀତା କଣ୍ଠା କହ ମା ! ଭାରତୀ ।
ତୁମ୍ଭେ କି ଗୋ ସତେ ଏ ନବ ବାଳା,
ନିସର୍ଗ ମାଧୁରୀ ସୁଷମା ସାଧବୀ
କାନନ ଲକ୍ଷ୍ମୀର ମାଧବୀ ମାଳା । ୭୦ ।

ନଜାଣେ କପଟ ଲମ୍ପଟ ପୀରତି
ନିପଟ ସୁନ୍ଦରୀ ବନ୍ଧୁ ଛଳନା
ନ ଭରେ ତ କେତେ କୁଞ୍ଚିତ ଭ୍ରୂଭଙ୍ଗେ
କୁଟିଳର କୂଟ ବାଣୀ ଭଲନା । ୭୧ ।।

ମିଥ୍ୟା ଅପବାଦ ଚୌର୍ଯ୍ୟ ହିଂସା ଦ୍ୱେଷ
ସଙ୍ଗେ ପରିଚୟ ନାହିଁତ ତାର
ଦୁର୍ନୀତି ବନ୍ଧନୁଁ ମୁକ୍ତ ତା ହୃଦୟ;
ତୁମ୍ଭେ କି ସେ ଧରି ହୃଦୟ ହାର ? ୭୨

ନାରୀ ମହିମାର ପବିତ୍ର ସୁନ୍ଦର
ଭାସ୍ୱର ବିମଳ ସମୁଜ୍ଜ୍ୱଳ ଶିଖା ।
ଫୁଟାଇ ଥିଲ ଯତନେ ଏ ଅଙ୍ଗର
ଜନତ ଲଲାଟେ ଗୌରବ ଟୀକା । ୭୩

ଝଲକେ ଯାହାର ପଲକେ ପଲ୍ଲବ
ହଉଥିଲା ମୃତ ଜୀବନ ତରୁ,
ଯିସି ପଡ଼ୁଥିଲା କାଳ ମୃତ୍ୟୁ ପାଶ
ମୃତ୍ୟୁ ଦେବତାର କମ୍ପିଲ କରୁ । ୭୪ ।

ସେ ଜ୍ୟୋତ ଝଲକ ଲିଭାଇବା ଲାଗି
ପ୍ରସାରିଲେ କର ଅସଂଖ୍ୟ ଭଟେ,
ଝଣ୍ଡ ପଡ଼ୁଥିଲା ରାଜ ଚକ୍ରବର୍ତ୍ତୀ—
ଲଲାଟ କପାଟ ଭୁଲିଲେ ଡରେ । ୭୫ ।

ଶୁଭ୍ର ଫେନ ଚୂଡ଼ ଅନ୍ଦୋଳିତ କୋଟି
କଲ୍ଲୋଳ କପାଟ ସାଗର ଭେଦ
ଜ୍ୟୋତ୍ସ୍ନା ହାସେ ବର୍ଦ୍ଧି ଗରଜେ ବାଳସି
ଲଙ୍ଘ ଦ୍ୱୀପେ ପର୍ବତ ଛେଦ; । ୭୬ ।

ଦାନବ ପାଳିତ ଅଶୋକ କାନନେ
ମାନ ଗୋବନ୍ଦର ସଖ୍ୟ ସଦନେ
ଯବନ ଭବନେ, ଶ୍ୱାପଦ ସଙ୍କୁଳ
ଅମା ଅନ୍ଧାରିତ ଗହନ ବନେ । ୭୭ ।

ଉଦ୍‌ଭାସିତ କରି ଅତୀତ ଭବିଷ୍ୟ
ବିବୁଧ ବନ୍ଦିତ ବିଶ୍ୱ ବିଭବେ
ଫୁଟିବ ରହସ୍ୟ ସର୍ବେ ଜଗତେ
କାଳବକ୍ଷ ଭେଦ ସମ ଗୌରବେ । ୭୮ ।

ସେ ଚିନ୍ମୟୀ ଜ୍ୟୋତି ନାହିଁ କଲ୍ଲୋଳିନୀ ।
ଏ ବନବାସିନୀ ଅବଳା ପ୍ରାଣେ,
ମାତ୍ର ତା ସୁନ୍ଦର ସରଳ ଜୀବନ
ସେ ଅତୀତ ସ୍ମୃତି ମାନସେ ଆଣେ । ୭୯ ।

ଲିଭି ଯାଇଅଛି    ସେହି ପୂର୍ଣ୍ଣ ଜ୍ୟୋତି
ଅସିଛି ଝଞ୍ଜା    ଅନ୍ଧାର ଘୋଟି
ଅର୍ଣ୍ଣବ ଉଲ୍ଲାସ    ଗର୍ଜମା କମ୍ପିତ
ଖସି ପଡ଼ନ୍ତିରେ    ଭୂତଳେ ଲୋଟି ! ୮୦ ।
ଥାଉ କଲ୍ଲୋଳିନୀ    ସେ ଦୁଃଖ କାହାଣୀ
କହିବାକୁ ଅଛି    ଧାଉଁଛି ବେଳ
ଉଠିଲଣି ଦେଖ    ଝଡ଼ିତ ଗଗନେ
ମଧୁର କୂଜନ    ଚେତନ ଦେଲ । ୮୧ ।
କୁହୁଡ଼ା ପାଟିରୁ    ଚୋ ଡାର କାନନେ
ଅସିଲେଣି ଛୁଟ୍ଟା    ଧଇଁଡ଼ା ଗଣ
ପ୍ରତାପଙ୍କ ଲାଗି    କୈବର୍ତ୍ତ ରାଜର
ତୀକ୍ଷ୍ଣ ଖଡ୍ଗମୁଖେ    ଭାରିବେ ରଣ । ୮୨ ।

ସମ୍ପୂର୍ଣ୍ଣ



ମୁଦ୍ରାକର ଶ୍ରୀ ବାଳକୃଷ୍ଣ କର, ବି. ଏ.
ସାରସ୍ୱତ ପ୍ରେସ—କଟକ ୧୯୫୬